# ମହାପୁରୁଷ ଗୋପବନ୍ଧୁ

ଲେଖିକା :
ଅର୍ଚ୍ଚନା ଦାସ

ପ୍ରକାଶକ :
କ୍ୟାପିଟାଲ ଷ୍ଟୁଡେଣ୍ଟସ୍ ଷ୍ଟୋର
୧୦୪, ଅଶୋକ ନଗର, ଭୁବନେଶ୍ୱର-୯

ମହାପୁରୁଷ ଗୋପବନ୍ଧୁ

( ନବ ସାକ୍ଷରଙ୍କ ନିମିତ୍ତ )

ଲେଖିକା :

ଅର୍ଚ୍ଚନା ଦାସ

ପ୍ରକାଶକ :

ଶ୍ରୀ ବିପ୍ରଚରଣ ଦାଶ

କ୍ୟାପିଟାଲ ଷ୍ଟୁଡେଣ୍ଟସ୍ ଷ୍ଟୋର

୧୪୫, ଅଶୋକ ନଗର

ଭୁବନେଶ୍ବର-୭୫୧୦୦୯

ପ୍ରଥମ ସଂସ୍କରଣ ୧୯୮୫

ମୁଦ୍ରଣ :

ଜୁଲୁ ପ୍ରିଣ୍ଟର୍ସ, ୭୨ ବୁଦ୍ଧେଶ୍ବରୀ କଲୋନୀ, ଭୁବନେଶ୍ବର-୬

ମୂଲ୍ୟ-ଟ ୨-୫୦

MAHAPURUSHA GOPABANDHU

( For Neo-Literate )

Written by :
ARCHANA DAS

Published by :
Sri Bipra Charan Dash
CAPITAL STUDENT'S STORE
145, Ashcka Nagar,
Bhubaneswar-751009

First Edition-1985

Printed by :
JULU PRINTERS
72 Budheswari Colony,
Bhubaneswar-6

Price Rs. 2-50

# ସୂଚୀପତ୍ର


| | | |
|---|---|---|
| ୧ । | ଭାର୍ଗବୀର ଦାନ | ୧ |
| ୨ । | ବାଲ୍ୟ ଜୀବନ | ୩ |
| ୩ । | ବାଲ୍ୟ ବିବାହ ଓ ପାଠପଢ଼ା | ୪ |
| ୪ । | ଶୈଶବର ସେବା | ୫ |
| ୫ । | ଜନସେବା, ଶିକ୍ଷକତା ଓ ଓକିଲାତି | ୭ |
| ୬ । | ବ୍ୟବସ୍ଥାପକ ଜୀବନ | ୯ |
| ୭ । | ସତ୍ୟବାଦୀ ବିଦ୍ୟାଳୟ ପ୍ରତିଷ୍ଠା | ୧୦ |
| ୮ । | ସେବା ଓ ତ୍ୟାଗର ଅବତାର | ୧୧ |
| ୯ । | ଗଣଜୀବନ ପାଇଁ ଜଣକର ବଳିଦାନ | ୧୪ |
| ୧୦ । | ଦୀନ, ଦରିଦ୍ରର ପ୍ରତିନିଧି | ୧୭ |
| ୧୧ । | କର୍ତ୍ତବ୍ୟ ପରାୟଣତା | ୧୯ |
| ୧୨ । | ଗଣସେବାର ଲକ୍ଷ୍ୟ | ୨୦ |
| ୧୩ । | ଜାତୀୟତାର ଉତ୍ସ | ୨୧ |
| ୧୪ । | ସମାଜର ପ୍ରତିନିଧି 'ସମାଜ' | ୨୨ |
| ୧୫ । | ଅସହଯୋଗ ଓ କାରାବରଣ | ୨୩ |
| ୧୬ । | ସାହିତ୍ୟ ମମତା | ୨୪ |
| ୧୭ । | କର୍ମ ସାଧନା | ୨୫ |
| ୧୮ । | ବହୁମୁଖୀ ଆଦର୍ଶ | ୨୭ |
| ୧୯ । | ହିତୋପଦେଶ | ୨୯ |
| ୨୦ । | ଧର୍ମାନୁରାଗ | ୩୧ |
| ୨୧ । | ପଲ୍ଲୀ ଉନ୍ନୟନ | ୩୩ |
| ୨୨ । | ଜାଗ୍ରତ ଜୀବନର ଚିରନିଦ୍ରା | ୩୪ |

# ଭାର୍ଗବୀର ଦାନ

ଜଗନ୍ନାଥ ଧାମର ଅଳ୍ପ ଦୂରରେ ସାକ୍ଷୀଗୋପାଳ । ଏହି ନଗରୀର କିଛି ଦୂରରେ ଭାର୍ଗବୀ ନଦୀ ପ୍ରବାହିତ ହେଉଛି । ଭାର୍ଗବୀ ନଦୀ କୂଳରେ ଗୋଟିଏ ଛୋଟ ଗାଁ । ଏହି ଗାଁର ନାଁ ସୁଆଣ୍ଡୋ ।

ଅନେକ ବର୍ଷ ତଳେ ଏହି ଗାଁରେ ଦୈତାରୀ ଦାସ ନାମକ ଜଣେ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କର ବିବାହ ହୋଇଯାଇଥିଲା । କିନ୍ତୁ ବିବାହର ଅଳ୍ପଦିନ ପରେ ତାଙ୍କ ସ୍ତ୍ରୀଙ୍କ ମୃତ୍ୟୁ ଘଟିଲା । ସେ ପୁଣି ଆଉ ଗୋଟିଏ ଝିଅକୁ ବିବାହ କଲେ । ବିଧିର ବିଧାନ ଏପରି ଯେ ଏଥର ମଧ୍ୟ ତାଙ୍କର ସ୍ତ୍ରୀ ତାଙ୍କୁ ଏକା କରି ଚାଲିଗଲେ । ବ୍ରାହ୍ମଣ ଦୁଃଖରେ ଭାଙ୍ଗି ପଡ଼ିଲେ । ତୃତୀୟ ଥର ବିବାହ କରିବା ପାଇଁ ସେ ରାଜି ହେଲେ ନାହିଁ । କିନ୍ତୁ ଗୁରୁଜନମାନେ ବଂଶ ରକ୍ଷା କରିବା ପାଇଁ ଅନୁରୋଧ କଲେ । ବଡ଼ ବଡ଼ିଆଙ୍କ କଥାକୁ ଏଡ଼ାଇ ନ ଦେଇ ସେ ସ୍ୱର୍ଣ୍ଣମୟୀ ନାମକ ଜଣେ କନ୍ୟାଙ୍କୁ ବିବାହ କଲେ ।

ସ୍ୱର୍ଣ୍ଣମୟୀ ଦୈତାରୀ ଦାସଙ୍କ ଭଙ୍ଗା ସଂସାରକୁ ସୁନାର ସଂସାରରେ ପରିଣତ କରିବା ପାଇଁ ଚାହିଁଥିଲେ ।

ସେ ଆଶା ତାଙ୍କର ସଫଳ ହୋଇଥିଲା । ଦୈତାରୀ ଦାସଙ୍କ କୁଳର ତିଳକ ସ୍ୱର୍ଣ୍ଣମୟୀଙ୍କ ଜଠରରେ କ୍ରମେ କ୍ରମେ ବଢ଼ିବାକୁ ଲାଗିଲା । ଶିଶୁଟି ଜନ୍ମ ହେବା ବହୁ-ଦିନ ପୂର୍ବରୁ ମାଆ ସ୍ୱର୍ଣ୍ଣମୟୀଙ୍କୁ ଅନେକ ଯନ୍ତ୍ରଣା ସହିବାକୁ ପଡ଼ିଲା । ବୈଦ୍ୟ, କବିରାଜଙ୍କ ସମସ୍ତ ପ୍ରକାର ଔଷଧ, ଚେର, ମୂଳୀ, କିଛି ହେଲେ ତାଙ୍କର କଷ୍ଟକୁ ଉପଶମ କରିପାରି ନ ଥିଲା ।

ଦିନେ ରାତିରେ ସ୍ୱର୍ଣ୍ଣମୟୀ ଶୋଇ ପଡ଼ିଥିଲେ । ହଠାତ୍ ସ୍ୱପ୍ନରେ ଦୈବବାଣୀ ଶୁଣିବାକୁ ପାଇଲେ ଯେ— "ଯେଉଁ ପିଲାଟି ଜନ୍ମ ହେବାକୁ ଯାଉଛି, ସେଇ ପିଲାଟି ତୁମର ନୁହେ । ଏଣୁ ପଡ଼ିଶା ଘରକୁ ଚାଲିଗଲେ ଅତି ସୁଖରେ ପୁତ୍ରଟିଏ ହେବ ।" ସ୍ୱର୍ଣ୍ଣମୟୀଙ୍କ ନିଦ ଭାଙ୍ଗି ଯାଇଥିଲା । ଦୈବବାଣୀ ଅନୁସାରେ ସେ ପଡ଼ୋଶୀ ଚନ୍ଦ୍ରଧର ଦାସଙ୍କ ଘରକୁ ଚାଲିଗଲେ । କିଛି ସମୟ ପରେ ପୁତ୍ରଟିଏ ଜନ୍ମ ହୋଇଥିଲା । ସେଦିନ ଥିଲା ୧୮୭୭ ମସିହା, ଅକ୍ଟୋବର ୯ ତାରିଖ ।

ସେହି ଛୋଟ ଶିଶୁଟିକୁ ମାଆ ସ୍ୱର୍ଣ୍ଣମୟୀ ଜନ୍ମଦେଲେ କିନ୍ତୁ ପାଳନ କରି ପାରି ନ ଥିଲେ । ସେ ଜନ୍ମ ହେବାର କିଛି ଦିନ ପରେ ସ୍ୱର୍ଣ୍ଣମୟୀ ଆରପାରିକୁ ଚାଲିଯାଇ ଥିଲେ । ମାତୃହୀନା ଶିଶୁଟି ମାଆକୁ ମଧ୍ୟ ସେତେବେଳେ ଚିହ୍ନିପାରି ନ ଥିଲା । ଏହି ଶିଶୁ ଥିଲେ ପୁଣ୍ୟାତ୍ମା ଗୋପବନ୍ଧୁ ଦାସ ।

ମଥୁରା ନଗରୀରେ ଶ୍ରୀକୃଷ୍ଣଙ୍କୁ ମାଆ ଦେବକୀ ଜନ୍ମ ଦେଲେ, କିନ୍ତୁ ମାଆ ଯଶୋଦା ତାଙ୍କୁ ପାଳନ କରି ଛୋଟରୁ ବଡ଼ କଲେ । ଗୋପପୁରୀରେ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇଥିଲେ । ଠିକ୍ ସେହିପରି ମାଆ ସ୍ୱର୍ଣ୍ଣମୟୀ ପୁଅକୁ ଜନ୍ମ ଦେଲେ ପଡ଼ୋଶୀ ଚନ୍ଦ୍ରଧର ଦାସଙ୍କ ଘରେ କିନ୍ତୁ ବାଳୁତ ବିଧବା ପିଉସୀ ନାରୀଙ୍କ ଦ୍ୱାରା ଗୋପବନ୍ଧୁ ପାଳିତ ହେଲେ । ଭାର୍ଗବୀ କୂଳରେ ପାଣିପବନ ପାଇ ଉତ୍କଳ ଜନନୀର କୋଳରେ । ତେଣୁ ସେ ଉତ୍କଳର ମଣି । ଗୋପବନ୍ଧୁ ସମଗ୍ର ଉତ୍କଳ ବାସୀଙ୍କର ସୁଖ ଦୁଃଖରେ ନିଜକୁ ମିଳାଇ ଦେଇଥିଲେ । ଜୀବନର ଶେଷ ପର୍ଯ୍ୟନ୍ତ ସେ ସମଗ୍ର ଉତ୍କଳବାସୀଙ୍କର ବନ୍ୟା, ଦୁର୍ଭିକ୍ଷ ଓ ଦାରିଦ୍ର୍ୟରେ ସହାୟ ଓ ସମଭାଗୀ ହୋଇଥିଲେ । ତାଙ୍କ ଜୀବନ ଯଥାର୍ଥରେ ଭାର୍ଗବୀର ଦାନ, ସେ ଉତ୍କଳ ଜନନୀର ସନ୍ତାନ ।

## ବାଲ୍ୟ ଜୀବନ

ମା ଛେଉଣ୍ଡ ଶିଶୁଟିର ଯତ୍ନ ନେବା ସକାଶେ ପିତା ଦୈତାରୀ ପୁଣି ଆଉ ଗୋଟିଏ ନାରୀର ପାଣି ଗ୍ରହଣ କଲେ । କିନ୍ତୁ ନିଜ ମାଆ ଓ ପାଳିତ ମାଆ କେବେହେଲେ ସମାନ ନୁହନ୍ତି । ତେଣୁ ସେ ମାତୃ ସ୍ନେହ କଣ ତାହା ଜାଣି ନ ଥିଲେ । ପିଉସୀ କମଳା ଦେବୀ ବାଳୁତ ବିଧବା ଥିଲେ । ସେହି ଗୋପବନ୍ଧୁଙ୍କୁ ନିଜ ପୁଅଠାରୁ ଅଧିକ ସ୍ନେହ କରି ତାରି ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିଦେଇ

ଥିଲେ । ପିଉସୀଙ୍କ ସ୍ନେହରୁ ସେ ପରର ଉପକାର କରିବା ପାଇଁ ଶିକ୍ଷା ପାଇ ପାରିଥିଲେ ।

ପିତା ଦୈତାରୀ ଜଣେ ଅବଧାନଙ୍କୁ ଘରକୁ ଡାକି ଆଣି ପୁଅର ପାଠପଢା ଆରମ୍ଭ କରିଥିଲେ । ଏହାପରେ ତାଙ୍କୁ ଗାଁ ଚାଟଶାଳୀରେ ନାମ ଲେଖାଇଲେ । ଗୋପବନ୍ଧୁ ପ୍ରାଥମିକ ଶିକ୍ଷା ଶେଷ କଲାପରେ ସୁଆଣ୍ଡୋଠାରୁ ପାଞ୍ଚମାଇଲ ଦୂରରେ ରୂପଦେଈପୁର ଠାରେ ଥିବା ମଧ୍ୟ-ଭର୍ଣ୍ଣାକୁଲର ସ୍କୁଲରେ ପଢିଲେ । ସେତେବେଳେ ଲୋକେ ମଧ୍ୟ ଇଂରାଜୀ ସ୍କୁଲକୁ ଭର୍ଣ୍ଣାକୁଲର ସ୍କୁଲ କହୁଥିଲେ ।

## ବାଲ୍ୟବିବାହ ଓ ପାଠପଢା

ସେ ସମୟରେ ଓଡ଼ିଶାରେ ବାଲ୍ୟବିବାହ ପ୍ରଥାର ପ୍ରଚଳନ ଥିଲା । ଯୁବତୀ କନ୍ୟାକୁ ବିବାହ କଲେ ପିତୃ ପୁରୁଷଙ୍କୁ ପାଣି ମିଳିବ ନାହିଁ ବୋଲି ସମାଜରେ ଅନ୍ଧ-ବିଶ୍ୱାସ ରହିଥିଲା । ତେଣୁ ଗୋପବନ୍ଧୁ ବାରବର୍ଷ ବୟସରେ ମୋତୀ ନାମକ ଗୋଟିଏ ନଅ ବର୍ଷର ବାଳିକାକୁ ବିବାହ କରିଥିଲେ । ଏହି ବିଭାଘର ଗୋପବନ୍ଧୁଙ୍କୁ କଣ୍ଢେଇ ଖେଳ ପରି ଲାଗିଥିଲା । ଏଣୁ ତାଙ୍କର ପାଠପଢାରେ କିଛିହେଲେ ବାଧା ସୃଷ୍ଟି ଘଟି ନ ଥିଲା ।

ଭର୍ଣ୍ଣାକୁଲର ସ୍କୁଲର ପଢା ଶେଷକରି ସେ ପୁରୀଜିଲ୍ଲା ସ୍କୁଲରେ ପଢ଼ିଲେ । ପ୍ରଥମେ ସେ ଇଂରାଜୀ

ପାଠରେ ଖୁବ୍ ଧୁରନ୍ଧର ଥିଲେ । କିନ୍ତୁ ପରେ ସେ ବହୁ ଚେଷ୍ଟା କରି ଓଡ଼ିଆ ଓ ଇଂରାଜୀ ଉଭୟ ବିଷୟରେ ପଟୁ ହୋଇଗଲେ । ଏପରିକି ଶ୍ରେଣୀରେ ଉତ୍ତମ ଛାତ୍ର ରୂପେ ସୁନାମ ଅର୍ଜନ କରିଥିଲେ ।

ସେତେବେଳେ ଗୋପବନ୍ଧୁ ଟିକିଏ ଖନା ଥିଲେ । କଥା କହିବା ସମୟରେ ଖନେଇ ଖନେଇ କଥା କହୁଥିଲେ । ଏଥିପାଇଁ ସେ ପାଟିରେ ବାଲିଗରଡ଼ା ପୁରାଇ ଥିଲେ ଏବଂ ସକାଳ ଓ ସଞ୍ଜରେ ଶୂନ୍ୟ ଆକାଶକୁ ଚାହିଁ ଭାଷଣ ଦେଉଥିଲେ । ଏପରି କାର୍ଯ୍ୟ କରିବାର ଦେଖି ଗୋପବନ୍ଧୁଙ୍କ ସାଙ୍ଗମାନେ ତାଙ୍କୁ ଉପହାସ କରୁଥିଲେ । ସ୍କୁଲରେ ପଢିବା ସମୟରେ ସେ ବହୁ ସଭାସମିତିରେ ବକ୍ତୃତା ଦେଇ ସୁନାମ ଅର୍ଜନ କରିଥିଲେ ।

ଏହି ସ୍କୁଲରେ ପଢ଼ିବା ସମୟରେ ମୋତୀ ତାଙ୍କ ଘରକୁ ବୋହୂ ହୋଇ ଆସିଲେ । ଗୋପବନ୍ଧୁ ସ୍ୱାମୀ ଦାୟିତ୍ୱ ବହନ କରି ମଧ୍ୟ ପାଠପଢ଼ାକୁ ଅବହେଳା କରି ନ ଥିଲେ ।

## ଶୈଶବର ସେବା

୧୮୯୩ ମସିହା, ପୁରୀରେ ରଥଯାତ୍ରା ହେଉଥାଏ । ରଥଯାତ୍ରା ପାଇଁ ପୁରୀ ସହରକୁ ବହୁତ ଲୋକ ଗାଁ ଗହଳି, ଦେଶ ବିଦେଶରୁ ଆସିଥାନ୍ତି । ଲୋକଙ୍କ ଭିଡ଼ ହୋଇ ହଇଜା ରୋଗ ବ୍ୟାପିଲା । ଏହି ରୋଗର ପ୍ରତିକାର ପାଇଁ

ସେତେବେଳେ କୌଣସି ବ୍ୟବସ୍ଥା ନ ଥିଲା । ଏଣୁ ଅନେକ ଲୋକ ମୃତ୍ୟୁ ମୁଖରେ ପଡ଼ିଲେ । ଶବଗୁଡ଼ିକ ତୀର୍ଥ ସ୍ଥାନରେ ଏଣେତେଣେ ପଡ଼ିଥିଲା । ରୋଗ ଭୟରେ ସେ ସମୟରେ ଶବକୁ କେହି ଛୁଇଁବା ପାଇଁ ସାହସ କରୁ ନ ଥିଲେ ।

ଏହି ସମୟରେ କିଶୋର ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିଲେ । ପୁରୀ ସହରର ଏଭଳି ଅବସ୍ଥା ଦେଖି ଗୋପବନ୍ଧୁଙ୍କ କିଶୋର ପ୍ରାଣରେ ଆଘାତ ଲାଗିଥିଲା । ତେଣୁ ସେ ଏହାର ସମାଧାନ ପାଇଁ 'ପୁରୀ ସେବା ସମିତି' ନାମରେ ଗୋଟିଏ ସ୍ୱେଚ୍ଛା ସେବକ ଦଳ ଗଠନ କରିଥିଲେ । ଏହି ଦଳର ପିଲାମାନେ ଶବଗୁଡ଼ିକୁ ଉଠାଇ ନେଇ ଦାହ କରୁଥିଲେ ଏବଂ ରୋଗୀମାନଙ୍କର ସେବା କରୁଥିଲେ । ଗୋପବନ୍ଧୁଙ୍କର ଜନସେବା କରିବା ଏହିଠାରୁ ହିଁ ଆରମ୍ଭ ହୋଇଥିଲା । ଗୋପବନ୍ଧୁଙ୍କ ଦଳ ପ୍ରତିବର୍ଷ ରଥ ଯାତ୍ରାରେ ଲୋକଙ୍କ ପାଇଁ ହିତକର କାର୍ଯ୍ୟ କରୁଥିଲା ।

୧୮୯୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଗୋପବନ୍ଧୁ ଏନ୍‌ଟ୍ରାନ୍‌ସ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ । ମାଟ୍ରିକ୍ ପରୀକ୍ଷାକୁ ସେ ସମୟରେ ଏନ୍‌ଟ୍ରାନ୍‌ସ୍ କହୁଥିଲେ । ଏହାପରେ ସେ କଟକରେ ଥିବା ରେଭେନ୍‌ସା କଲେଜରେ ଏଫ୍ ଏ. ପଢ଼ିବା ପାଇଁ ନାମ ଲେଖାଇଲେ । ରେଭେନ୍‌ସା କଲେଜର ଛାତ୍ରଥିବା ସମୟରେ ସେ 'କର୍ତ୍ତବ୍ୟ ବୋଧିନୀ ସମିତି' ଗଠନ କରିଥିଲେ । ଏହି ସମିତିର ଯୁବକ-ମାନେ ନିଜ ଜାତୀୟ ପ୍ରେମକୁ ଜାଗ୍ରତ କରିବା ଏବଂ ପ୍ରକୃତ

ଅର୍ଥାତ୍ ବନ୍ୟା, ଦୁର୍ଭିକ୍ଷ ପ୍ରଭୃତିରେ ପୀଡ଼ିତ ହେଉଥିବା ଲୋକଙ୍କର ସେବା କରୁଥିଲେ, ସେମାନଙ୍କୁ ସାହାଯ୍ୟ କରୁଥିଲେ ।

## ଜନସେବା, ଶିକ୍ଷକତା ଓ ଓକାଲତି

୧୯୦୪ ମସିହାରେ ଗୋପବନ୍ଧୁ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସରକାରୀ ଚାକିରୀ କରିବା ପାଇଁ ସେ ଚାହୁଁ ନ ଥିଲେ । ଏଣୁ ଏମ୍. ଏ. ଶ୍ରେଣୀରେ ନାମ ଲେଖାଇଲେ । କିଛି ମାସ ପରେ ସେ ଏହି ଏମ୍. ଏ. ଶ୍ରେଣୀରୁ ବାହାରି ଆସି ଓକିଲାତି ପାଇଁ ଆଇନ ପାଠ ପଢ଼ିଲେ । ଆଇନ୍ ପରୀକ୍ଷା ଦେବା ପାଇଁ ସେ କଲିକତାରେ ଛ' ମାସ ରହିଲେ । ଏହି ଛ' ମାସ ମଧ୍ୟରେ ସେଠାରେ ଥିବା ଓଡ଼ିଆ ଶ୍ରମିକମାନଙ୍କର ଦୁର୍ଦ୍ଦଶା ଦେଖି ସେ ବିଚଳିତ ହୋଇ ପଡ଼ିଲେ । ସେମାନଙ୍କ ଅବସ୍ଥାର ଉନ୍ନତି ପାଇଁ ସେ ଚେଷ୍ଟା କରିଥିଲେ । ବୃଦ୍ଧମାନଙ୍କ ଶିକ୍ଷାଦାନ ପାଇଁ ସେ ନୈଶ୍ୟ ବିଦ୍ୟାଳୟ ବସାଇଥିଲେ । ସେମାନଙ୍କୁ ଏକଜୁଟ୍ କରି 'ଓଡ଼ିଆ ଶ୍ରମିକ ସଂଘ' ଗଢ଼ିଥିଲେ ।

ୟୁରୋପୀୟ ଶିକ୍ଷାକୁ ସେ ପସନ୍ଦ କରୁ ନ ଥିଲେ । ଶିକ୍ଷା କ୍ଷେତ୍ରରେ ଉନ୍ନତି ପାଇଁ ସେ ଚାହୁଁଥିଲେ ଉତ୍ତମ ସ୍ୱଦେଶୀୟ ଶିକ୍ଷା । ଏଣୁ ସେ ଆଇନ ପରୀକ୍ଷା ଦେବାପରେ

ନୀଳଗିରିରେ ଥିବା ସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ ଯୋଗଦେଲେ । ସେଠାରେ ସେ ତିନି ମାସ ରହିବା ପରେ କଟକକୁ ଚାଲି ଆସିଲେ । ଆଇନ୍ ପରୀକ୍ଷାର ଫଳ ପ୍ରକାଶ ହୋଇ ଯାଇଥିଲା । ଗୋପବନ୍ଧୁ ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକରେ ଓକିଲାତି କାମ ଆରମ୍ଭ କଲେ ।

ମଧୁସୂଦନ ଦାସ, ବୈକୁଣ୍ଠ ଦତ୍ତ, ଗୋକୁଳାନନ୍ଦ ଚୌଧୁରୀଙ୍କ ଅଧୀନରେ ଗୋପବନ୍ଧୁ ଓକିଲାତି ଆରମ୍ଭ କରିଥିଲେ । ଏହାପରେ ସେ ମୁକ୍ତିଆର ରାମଚନ୍ଦ୍ରଙ୍କ ପରାମର୍ଶରେ ପୁରୀ ସହରକୁ ଯାଇ ଓକିଲାତି କଲେ । ସେତେବେଳେ ପୁରୀ ସହରରେ କେହି ଖ୍ୟାତି ଅର୍ଜନ କରିଥିବା ଓକିଲ ନ ଥିଲେ । ଗୋପବନ୍ଧୁ ଚାହିଁଥିଲେ ଅନେକ ଟଙ୍କା ରୋଜଗାର କରି ପାରିଥାନ୍ତେ । କିନ୍ତୁ ସେ ଦୁଃଖୀ, ଦରିଦ୍ରଙ୍କ ସେବାପାଇଁ ମନ ବଳାଇଥିଲେ ।

ପୁରୀରେ ଓକିଲାତି କରିବା ସମୟରେ ଗୋପବନ୍ଧୁ ସେଠାର କୁଷ୍ଠ ଆଶ୍ରମର ସେକ୍ରେଟାରୀ ହୋଇଥିଲେ । ଚାନ୍ଦା ସଂଗ୍ରହ କରି ଏବଂ ନିଜେ ଅର୍ଥଦାନ କରି ଆଶ୍ରମର ଉନ୍ନତି କରିଥିଲେ । ସେତେବେଳେ ଗୋପବନ୍ଧୁ ପୁରୀ ମ୍ୟୁନିସିପାଲ୍ କାଉନସିଲର ସଭ୍ୟରୂପେ ମନୋନୀତ ହୋଇ-ଥିଲେ । ପୁଣି ସାକ୍ଷୀଗୋପାଳ ମନ୍ଦିର ଟ୍ରଷ୍ଟି ହୋଇଥିଲେ । ଏହାଛଡ଼ା ସେ ପୁରୀରେ ଗୋଟିଏ ବ୍ୟାୟାମଶାଳା ପ୍ରତିଷ୍ଠା କରିଥିଲେ । ଏହା ଦ୍ୱାରା ସେ ଯୁବ ସମାଜର ସ୍ୱାସ୍ଥ୍ୟ

ଗଠନ ଦିଗରେ ଚେଷ୍ଟା କରିଥିଲେ । ଗୋପବନ୍ଧୁ ମଝିରେ ମଝିରେ ବ୍ରାହ୍ମଣ ସମିତି ଛାତ୍ରାବାସରେ ସଭା ଡକାଇ ଦେଶର ବିଭିନ୍ନ ସମସ୍ୟା ବିଷୟରେ ଆଲୋଚନା କରୁଥିଲେ ।

## ବ୍ୟବସ୍ଥାପକ ଜୀବନୀ

ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ ଜଣେ ଓଡ଼ିଆ ଓକିଲ ନିଯୁକ୍ତ କରିବା ପାଇଁ ଚାହୁଁଥିଲେ । ତେଣୁ ସେ ଏହି ବିଷୟ ନେଇ ମଧୁବାବୁଙ୍କୁ କହିଥିଲେ । ମଧୁବାବୁଙ୍କ ଅଧୀନରେ ଦ୍ୱିତୀୟଥର ପାଇଁ ଗୋପବନ୍ଧୁ ଓକିଲାତି କରୁଥିଲେ । ମଧୁବାବୁଙ୍କ ପରାମର୍ଶରେ ଗୋପବନ୍ଧୁ ୧୯୧୦ ମସିହାରେ ମୟୂରଭଞ୍ଜରେ ସରକାରୀ ଓକିଲ ରୂପେ ନିଯୁକ୍ତ ହେଲେ । ନିଜର ବୁଦ୍ଧି ଏବଂ ବିଶିଷ୍ଟ ଗୁଣଦ୍ୱାରା ଗୋପବନ୍ଧୁ ରାଜାଙ୍କର ବିଶ୍ୱସ୍ତ ହୋଇପାରିଥିଲେ । ତେଣୁ ରାଜା ତାଙ୍କୁ ମୟୂରଭଞ୍ଜ ରାଜ୍ୟ କାଉନ୍‌ସିଲର ସଭ୍ୟ ରୂପେ ବାଛିଥିଲେ ।

ଗୋପବନ୍ଧୁଙ୍କ ବାରିପଦାରେ ରହିବା ସମୟରେ କେବଳ ତିନିଥର ବ୍ୟବସ୍ଥାପକ ସଭା ବସିଥିଲା । ସେ ସବୁ ସଭାରେ ଗୋପବନ୍ଧୁ ଯୋଗ ଦେଇଥିଲେ । ସେ ଦରିଦ୍ର ଜନତାଙ୍କ ସ୍ୱାର୍ଥ ରକ୍ଷା କରିବା ପାଇଁ ତାଙ୍କର ପ୍ରତ୍ୟେକ ଭାଷଣରେ ଜନସାଧାରଣଙ୍କୁ ଚେତାଇ ଦେଇଥିଲେ ।

୧୯୧୨ ମସିହା ଫେବୃୟାରୀ ମାସ ୨୨ ତାରିଖରେ ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓଙ୍କ ମୃତ୍ୟୁ ହେଲା । ମୟୂରଭଞ୍ଜ

ରାଜ୍ୟର ପରିଚାଳନା ଦାୟିତ୍ୱ ଇଂରେଜ ସରକାର ହାତକୁ ନେଇଗଲେ । ବିଦେଶୀ ଶାସକଙ୍କର ଅନ୍ୟାୟ ଅନୀତିରେ ଦୁଃଖିତ ହୋଇ ଗୋପବନ୍ଧୁ ମୟୂରଭଞ୍ଜ ଛାଡ଼ି କଟକ ଚାଲି ଆସିଲେ ।

## ସତ୍ୟବାଦୀ ବିଦ୍ୟାଳୟର ପ୍ରତିଷ୍ଠା

୧୯୧୩ ମସିହାରେ ସାକ୍ଷୀଗୋପାଳ ମନ୍ଦିର ପଛପଟେ 'ଗୁପ୍ତ ବୃନ୍ଦାବନ' ଠାରେ ସତ୍ୟବାଦୀ ବିଦ୍ୟାଳୟ ସ୍ଥାପନ ପାଇଁ ମୂଳଦୁଆ ପଡ଼ିଥିଲା । ଏହି ବିଦ୍ୟାଳୟର ନିର୍ମାଣ ଦାୟିତ୍ୱରେ ବିହାରୀଲାଲ ହୋତା ଥିଲେ । ସ୍କୁଲର ଉନ୍ନତିକଳ୍ପେ ମଧୁସୂଦନ ରାଓ, ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଓ ନୀଳକଣ୍ଠ ଦାସ ସତ୍ୟବାଦୀ ବିଦ୍ୟାଳୟ ପାଇଁ ଏହି ସ୍ଥାନଟିକୁ ବାଛିଥିଲେ ।

ଗୋପବନ୍ଧୁ ପୁରୀରେ ରହି ଓକିଲାତି କରିବା ସମୟରେ ଉଚ୍ଚ ପ୍ରାଥମିକ ସ୍କୁଲକୁ ମାଧ୍ୟମିକ ସ୍କୁଲରେ ପରିଣତ କରାଇଥିଲେ । ସେହି ସ୍କୁଲକୁ ପରେ ସତ୍ୟବାଦୀ ବିଦ୍ୟାଳୟକୁ ଉଠାଇ ଆଣିଥିଲେ । ୧୯୦୯ ମସିହା ଅଗଷ୍ଟ ୧୨ ତାରିଖରେ ମାତ୍ର ୧୯ ଜଣ ଛାତ୍ରଙ୍କୁ ନେଇ ସତ୍ୟବାଦୀ ମାଧ୍ୟମିକ ସ୍କୁଲ ଗଢ଼ି ଉଠିଥିଲା । ପ୍ରଥମେ ଏହି ସ୍କୁଲ ସାକ୍ଷୀଗୋପାଳ ମନ୍ଦିରର ଗୋଟିଏ କୋଠରୀରେ କାର୍ଯ୍ୟକାରୀ ହେଉଥିଲା, କିନ୍ତୁ ପରେ ଛପର ଘର ଗୋଟିଏ ତୋଳା ଯାଇଥିଲା ।

ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରେ ଜାତିବର୍ଣ୍ଣ ଭେଦାଭାବ କିଛି ରହୁ ନ ଥିଲା । ଶେଷରେ ସହଶିକ୍ଷା ଅର୍ଥାତ୍ ବାଳକ ଓ ବାଳିକା ଉଭୟେ ମିଶି ପାଠ ପଢ଼ିଲେ । ଛାତ୍ରାବାସରେ ମିଳିତ ହୋଇ ଭୋଜନ କରିବା ବ୍ୟବସ୍ଥା ମଧ୍ୟ ଥିଲା । ଏହି ସ୍କୁଲକୁ କେତେଜଣ ରକ୍ଷଣଶୀଳ ବ୍ରାହ୍ମଣ ରାଗିଯାଇ ୧୯୧୨ ମସିହା ମାର୍ଚ୍ଚ ୨୨, ତାରିଖରେ ନିଆଁ ଲଗାଇ ଦେଇଥିଲେ । ଛାତ୍ରମାନେ ଖୋଲା ଆକାଶ ତଳେ ବସି ଅନେକ ଦିନ ପଢିଲେ । ୧୯୧୪ ମସିହାରେ 'ଗୁପ୍ତ ବୃନ୍ଦାବନ'ରେ ବିଦ୍ୟାଳୟର ନୂଆ କୋଠାଘର ତିଆରି ହୋଇଥିଲା । ଏହି ବିଦ୍ୟାଳୟରେ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ ଏବଂ କୃପାସିନ୍ଧୁ ମିଶ୍ର ପ୍ରଭୃତି ଶିକ୍ଷକ ରୂପେ ନିଯୁକ୍ତି ପାଇଥିଲେ । ୧୯୧୦ ମସିହାରେ ଏହି ବିଦ୍ୟାଳୟକୁ ସରକାରଙ୍କ ଶିକ୍ଷା ବିଭାଗ ମଞ୍ଜୁରୀ ପ୍ରଦାନ କରିଥିଲେ । ୧୯୧୨ରେ ଅଷ୍ଟମ ଶ୍ରେଣୀ, ୧୯୧୩ ମସିହାରେ ନବମ ଓ ଦଶମ ଶ୍ରେଣୀ ଏବଂ ୧୯୧୪ରେ ବିଦ୍ୟାଳୟଟି ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଥିଲା । ଏହା ପ୍ରଥମେ କଲିକତା ବିଶ୍ୱବିଦ୍ୟାଳୟ ସହ ସଂଯୁକ୍ତ ହୋଇଥିଲା । କିନ୍ତୁ ୧୯୧୭ ମସିହାରେ ପାଟନାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ଓଡ଼ିଶାର ଅନ୍ୟାନ୍ୟ ବିଦ୍ୟାଳୟ ପରି ସତ୍ୟବାଦୀ ବିଦ୍ୟାଳୟ ମଧ୍ୟ ପାଟନା ବିଶ୍ୱବିଦ୍ୟାଳୟର ପରିସରଭୁକ୍ତ ହୋଇଥିଲା ।

## ସେବା ଓ ତ୍ୟାଗର ଅବତାର

ଗୋପବନ୍ଧୁଙ୍କ ସମୟରେ ଶିକ୍ଷା ପଦ୍ଧତି ଏ ଦେଶ ପକ୍ଷରେ ଉନ୍ନତ ଧରଣର ନ ଥିଲା । ଏଥିପାଇଁ ସେ ଛାତ୍ର-

ମାନଙ୍କୁ ଜାତୀୟ ଶିକ୍ଷା ଦେବାପାଇଁ ପ୍ରଗାଢ଼ ଉଦ୍ୟମ କରିଥିଲେ । ସେଥିପାଇଁ ଗୋପବନ୍ଧୁ ସତ୍ୟବାଦୀ ସ୍କୁଲର ଛାତ୍ରମାନଙ୍କୁ ଶିକ୍ଷକମାନଙ୍କ ଜରିଆ ର ନୀତିଶିକ୍ଷା, ଦେଶସେବା, ଲୋକସେବା, ଦରିଦ୍ରଙ୍କ ପ୍ରତି ସହାନୁଭୂତି ପ୍ରଭୃତି ବିଷୟରେ ଶିକ୍ଷା ଦେଇ ଦରିଦ୍ର ଲୋକଙ୍କ ସେବା କରିବା ପାଇଁ ଉତ୍ସାହ ଦେଉଥିଲେ ।

ଥରେ ପୁରୀ ଜିଲ୍ଲାରେ ବନ୍ୟା ହୋଇ ଅନେକ ଘରଦ୍ୱାର ଭାଙ୍ଗିଗଲା । କିଆରୀମାନଙ୍କରୁ ଧାନସବୁ ଧୋଇ ହୋଇଗଲା । ଚାରିଆଡ଼େ ଖାଲି ପାଣି । ବର୍ଷା ଝଡ଼ ବନ୍ଦ ମଧ୍ୟ ହେଉ ନ ଥିଲା । ଖାଦ୍ୟ ପାଇଁ ଲୋକମାନେ ବିକଳ ହେଉଥାନ୍ତି । କେତେଜଣ ଭଦ୍ରଲୋକ କଲେଜ ପିଲାଙ୍କୁ ଏକଜୁଟ କରି ଚାନ୍ଦା ଆଦାୟ କଲେ । ଚୂଡ଼ା, ଚାଉଳ, ଔଷଧ ପ୍ରଭୃତି କିଣା ହେଲା । ହଠାତ୍ ସେମାନେ ଶୁଣିଲେ ସେହି ବଡ଼ି ଅଞ୍ଚଳରେ ହଇଜା ଲାଗିଛି । ସେଠାକୁ ଯିବାପାଇଁ ଆଉ କେହିହେଲେ ସାହସ କଲେ ନାହିଁ । ଗୋପବନ୍ଧୁ ଏ ଖବର ଶୁଣି ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ଗୋପବନ୍ଧୁଙ୍କ ସହ କେତେଜଣ କଲେଜ ଛାତ୍ର ମଧ୍ୟ ଯିବାପାଇଁ ବାହାରିଲେ ।

ନିଜ ନିଜ ପିଠିରେ ସମସ୍ତେ ଚୂଡ଼ା, ଚାଉଳ, ଔଷଧ ପ୍ରଭୃତି ଧରି ଚାଲୁଥାନ୍ତି । ନିଜ ଖାଇବା ପାଇଁ ମଧ୍ୟ ସାଙ୍ଗରେ ଚାଉଳ ନେଇଥାନ୍ତି । ସେମାନେ ଯେମିତି ସେ ଗାଁରେ ପହଞ୍ଚିଛନ୍ତି, ଲୋକମାନେ ସେମାନଙ୍କୁ ଘେରିଗଲେ ।

ଗୋପବନ୍ଧୁ ଲୋକମାନଙ୍କୁ ଦେଖି କାନ୍ଦି ପକାଇଲେ । ସାଙ୍ଗେ ସାଙ୍ଗେ ସେମାନଙ୍କୁ ଚୂଡ଼ା ଚାଉଳ ବଣ୍ଟାଗଲା ।

ସେହି ଅଞ୍ଚଳରେ ଦୁଇଦିନ ରହିବା ପରେ ସେବକମାନଙ୍କ ଚାଉଳ ସରିଗଲା । ଛାତ୍ରମାନେ କେମିତି କଣ ରାନ୍ଧି ଖାଇବେ ଚିନ୍ତା କଲେ । ଜଣେ ଛାତ୍ର ବଣ୍ଟା ହେବାପାଇଁ ଆସିଥିବା ଚାଉଳରୁ ରାନ୍ଧିବା ପାଇଁ କହିଲା । ତା କଥା ରଖି ରନ୍ଧା ହେଲା । ପତ୍ରରେ ଭାତ ସବୁ ବାଢିବା ପରେ ଗୋପବନ୍ଧୁ ପିଲାମାନଙ୍କୁ ପଚାରିଲେ ଆମ ଚାଉଳ ସରିଯାଇଥିଲା । ଚାଉଳ ଆସିଲା କେଉଁଠୁ । ଛାତ୍ରଟିଏ ଉତ୍ତର ଦେଇଥିଲା, ବଣ୍ଟା ହେବା ଚାଉଳରୁ ଆଜି ରୋଷେଇ ହୋଇଛି । ଗୋପବନ୍ଧୁ ଖାଇବା ପାଇଁ ରାଜି ହେଲେ ନାହିଁ ।

ଗୋପବନ୍ଧୁ ଖାଇବା ସ୍ଥାନରୁ ଉଠିଯିବା ଦେଖି ସବୁ ଛାତ୍ରମାନେ ମଧ୍ୟ ଉଠି ପଡ଼ିଲେ । ଗୋପବନ୍ଧୁ ସାଙ୍ଗେ ସାଙ୍ଗେ ଗ୍ରାମରୁ ଲୋକମାନଙ୍କୁ ଡାକି ଆଣି ସମସ୍ତ ଖାଦ୍ୟକୁ ବାଣ୍ଟି ଦେଲେ । ସେଦିନ ଆଉ ଗୋଟିଏ ଗାଁକୁ ଚୂଡ଼ା ଚାଉଳ ବାଣ୍ଟିବା ପାଇଁ ଗଲେ । ସେହି ଗାଁକୁ ସେମାନଙ୍କ ପାଇଁ ଚାଉଳ ଆସି ପହଞ୍ଚିଲା । ପିଲାମାନେ ଔଷଧ ପତ୍ର ପ୍ରଭୃତି ବାଣ୍ଟି ଦେଇ ଭୋକିଲା ଥିବା ହେତୁ ରୋଷେଇରେ ଲାଗିପଡ଼ିଲେ ।

ରୋଷେଇ ସରିବା ପରେ ବଢ଼ା ହେଲା । ପିଲାମାନେ ଭୋକରେ ଥିବା ହେତୁ ଗୋପବନ୍ଧୁ ସେମାନଙ୍କୁ ପ୍ରଥମେ

ଖାଇବା ପାଇଁ କହୁଥିଲେ । ପିଲାମାନେ ଖାଇବା ପରେ ଗୋପବନ୍ଧୁଙ୍କ ପାଇଁ ବଢ଼ା ହେଲା । ଗୋପବନ୍ଧୁ ଖାଇବା-ପାଇଁ ବସିଛନ୍ତି ଏହି ସମୟରେ ଜଣେ ଭୋକିଲା ସ୍ତ୍ରୀ ଲୋକ ଅତି ବ୍ୟାକୁଳ ହୋଇ ଡାକି କହିଲା- "ବାବୁ ପାଞ୍ଚଦିନ ହେଲା ଭାତ ଦେଖି ନାହିଁ, ଆଉ ବଞ୍ଚି ପାରିବି ନାହିଁ କି ଛୁଆଟାକୁ ବଞ୍ଚାଇ ପାରିବି ନାହିଁ ।" ଗୋପବନ୍ଧୁ ସ୍ତ୍ରୀ ଲୋକଟିକୁ ଦେଖି ସାଙ୍ଗେ ସାଙ୍ଗେ ନିଜ ପତ୍ରଟିକୁ ନେଇ ତା ପାଖରେ ଥୋଇ ଖାଇବାକୁ କହିଲେ । ସ୍ତ୍ରୀ ଲୋକଟି ଖାଇବା ଦେଖି ଗୋପବନ୍ଧୁଙ୍କ ଆଖିରୁ ଆନନ୍ଦରେ ଲୁହ ବୋହିଗଲା । ତା ସଙ୍ଗେ ସଙ୍ଗେ ତାଙ୍କ ପେଟ ମଧ୍ୟ ପୂରିଗଲା ।

ଗୋପବନ୍ଧୁ ଦରିଦ୍ରଙ୍କ ପାଇଁ କିପରି ନିଜ ଜୀବନକୁ ଉତ୍ସର୍ଗ କରିଥିଲେ ଏଥିରୁ ବୁଝାପଡ଼େ । ପିଲାମାନଙ୍କୁ ମଧ୍ୟ ଏପରି ନିଷ୍ଠାର ସହ ସେବା କରିବା ପାଇଁ ଶିକ୍ଷା ମିଳୁଥିଲା ।

## ଶିକ୍ଷାଜୀବନ ଆଉ ଜନ୍ମଭୂମିର ବଳିଦାନ

୧୯୦୪ ମସିହାର କଥା । କୁଶଭଦ୍ରା ନଦୀର ବନ୍ଧ ବଢ଼ି ପାଣିରେ ଭାଙ୍ଗିଗଲା । ଏହି ବଢ଼ି ପାଣିରେ ଘରଦ୍ୱାର ଭାସିଗଲା । ଖାଇବା ଜିନିଷ ମଧ୍ୟ ନଷ୍ଟ ହୋଇଗଲା । ଚାରିଆଡ଼େ ଦୁର୍ଭିକ୍ଷ ପଡ଼ିଲା । ଲୋକମାନେ ପେଟ ବିକଳରେ ଛଟପଟ ହେଲେ ।

ଏହି ସମୟରେ ଗୋପବନ୍ଧୁଙ୍କର ପୁଅକୁ ଖୁବ୍ ଜର ହୋଇଥିଲା । ତାଙ୍କର ଆଉ କିଛି ପିଲା ନ ଥିଲେ । ସେଇ ପୁଅଟି ଗୋପବନ୍ଧୁଙ୍କର ଏକୋଇର ବଳା ବଣିଟକେଶନ । ପୁଅର ଦେହ ଖରାପ ଆଡ଼କୁ ଗତି କରୁଥାଏ । ଘରର ସବୁ ଲୋକମାନେ ଆଗ୍ରହରେ ପୁଅର ମୁହଁକୁ ଚାହିଁ ବସିଥାନ୍ତି । ଗୋପବନ୍ଧୁ ମଧ୍ୟ ପିଲାଟିର ମୁଣ୍ଡରେ ହାତ ବୁଲାଉଥାନ୍ତି । ହଠାତ୍ ସେହି ସମୟରେ ବଢ଼ି ଅଞ୍ଚଳରୁ ଜଣେ ଲୋକ ଘର ଭିତରକୁ ଆସି ଘରର ଏପରି ଅବସ୍ଥା ଦେଖିଲା ।

ଗୋପବନ୍ଧୁ ଲୋକଟିକୁ ଆସିବାର କାରଣ ପଚାରିଲେ । ଲୋକଟି କରୁଣ କଣ୍ଠରେ କୁଶଭଦ୍ରା ନଦୀରେ ବନ୍ୟା ସୁଅ ଛୁଟିବା କଥା ଏବଂ ଲୋକ, ପଶୁ, ପକ୍ଷୀଙ୍କ ଦୁର୍ଦ୍ଦଶା କହି କାନ୍ଦି ପକାଇଲା । ଗୋପବନ୍ଧୁ ସାଙ୍ଗେ ସାଙ୍ଗେ ପୁଅ ପାଖରୁ ଉଠି ପଡ଼ିଲେ । ଏହା ଦେଖି ଲୋକଟି ଆଶ୍ଚର୍ଯ୍ୟ ହୋଇଗଲା । ଏତେ ଦୁଃଖରେ ସାମାନ୍ୟ ହସି ଗୋପବନ୍ଧୁ କହିଲେ—"ଯାହା ହେବାର କଥା, ତାହା ହେବ, ସବୁ ଭଗବାନଙ୍କର ଇଚ୍ଛା । ଆମେ ସେହି ଗାଁକୁ ଯିବା ଚାଲ ।" ପୁଅର ମୁହଁକୁ ନ ଚାହିଁ ଗୋପବନ୍ଧୁ ବଢ଼ି ଅଞ୍ଚଳକୁ ଚାଲିଗଲେ ।

ବଢ଼ି ଅଞ୍ଚଳରୁ ଫେରି ଗୋପବନ୍ଧୁ ଶୁଣିଲେ ତାଙ୍କର ପୁଅ ମରିଯାଇଛି । ସମସ୍ତେ ଭାବିଥିଲେ ଗୋପବନ୍ଧୁ ଏ ଖବର ପାଇ ହୁଏତ ଅତି ଦୁଃଖରେ କାନ୍ଦି ପକାଇବେ । କିନ୍ତୁ ଫଳ ହେଲା ଓଲଟା, କାନ୍ଦିବା ତ ଦୂରରେ ଥାଉ ପରିବାରର

ଲୋକଙ୍କୁ ବୁଝାଇ କହୁଥିଲେ, "ଗୋଟିଏ ପୁଅ ସିନା ରୋଗରେ ପଡ଼ି ମରିଗଲା, ମାତ୍ର ଆଜି ଶହ ଶହ ପୁଅଙ୍କୁ ମୁଁ ମରଣ ମୁହଁରୁ ଟାଣି ଆଣିଛି ।" ତାଙ୍କର ଏପରି ଧୈର୍ଯ୍ୟପୂର୍ଣ୍ଣ କଥା ଶୁଣି ସମସ୍ତେ ଚକିତ ହୋଇ ପଡ଼ିଲେ ।

ପରପାଇଁ ନିଜର ସମସ୍ତ ସ୍ୱାର୍ଥକୁ ଆହୁତି ଦେଇଥିଲେ । ଦେଶର ସେବା ପାଇଁ ନିଜ ଜୀବନକୁ ପ୍ରକୃତରେ ସେ ଉତ୍ସର୍ଗ କରିଦେଇଥିଲେ । ଗୋଟିଏ ପୁତ୍ରକୁ ହରାଇ କୋଟିଏ ଲୋକଙ୍କର ପ୍ରାଣରକ୍ଷା କରିଥିଲେ ବୋଲି ଆନନ୍ଦରେ ଲେଖିଛନ୍ତି—

"ଏକର ବିନାଶେ ଅନେକ ପ୍ରକାଶେ
ସୃଷ୍ଟିର ଏ ନିତ୍ୟ ବିଧି,
ଏକର ଯା କ୍ଷୟ ଅନେକ ଉଦୟ
ଅନେକ ଏକର ସିଦ୍ଧି ।"

ଗୋପବନ୍ଧୁଙ୍କ ଜୀବନ ମଧ୍ୟରେ ୧୯୦୪, ୧୯୦୭, ୧୯୧୯, ୧୯୨୦, ୧୯୨୫, ଓ ୧୯୨୭ରେ ବନ୍ୟା ହୋଇଥିଲା । ଗୋପବନ୍ଧୁ ନିଜେ ପ୍ରତ୍ୟେକ ବନ୍ୟା ଅଞ୍ଚଳକୁ ଯାଇ ଚୂଡ଼ା, ଚାଉଳ ବାଣ୍ଟିଥିଲେ । ସେମାନଙ୍କ ଦୁଃଖ ସୁଖରେ ସମଭାଗୀ ହୋଇଥିଲେ ।

## ଦୀନ, ଦରିଦ୍ରର ପ୍ରତିନିଧି

୧୯୧୮ ମସିହାରେ ପୃଥିବୀ ଉପରେ ଇନ୍ଦ୍ର ଦେବତାଙ୍କ କ୍ରୋଧ ହୁଏତ ବଢ଼ି ଯାଇଥିଲା । ତେଣୁ ବନ୍ଦୁଏ ହେଲେ

ଜଲ ଆକାଶରୁ ପଡ଼ିଲା ନାହିଁ । ବାଇବାଡ଼ି, କୂଅ, ପୋଖରୀ, ନଦୀ ନାଳ ପ୍ରଭୃତି ଠୋ ଠୋ ହୋଇ ଫାଟିଗଲା । ସେହିବର୍ଷ ଫସଲର ପ୍ରଶ୍ନ ଉଠିଲା ନାହିଁ । ଯେଉଁମାନେ ବିହନ ବୁଣିଥିଲେ ସବୁ ପୋଡ଼ିଯାଇ ନଡ଼ାରେ ପରିଣତ ହେଲା ।

ପ୍ରତ୍ୟେକ ଜିନିଷର ଦର ବଜାର ହାଟ, ଦୋକାନରେ ହୁ ହୁ ହୋଇ ବଢିବାକୁ ଲାଗିଲା । ଧାନ ଚାଉଳର ଦର ଅନେକ ବଢ଼ି ଯାଇଥିଲା । ଲୋକମାନେ ପେଟ ବିକଳରେ ଭାତ ମୁଠାଏ ପାଇଁ କଲିକତା, ରେଙ୍ଗୁନ୍‌କୁ ଚାଲିଗଲେ । ନିଜ ପରିବାର, ଭାଇ ଭାଇ, ବାପପୁଅ, ମାଆପୁଅ, ବାପା ଝିଅ. ଜ୍ଞାତି କୁଟୁମ୍ବ, ବନ୍ଧୁ, କାହାର ସମ୍ପର୍କ କାହା ସାଙ୍ଗରେ ରହିଲା ନାହିଁ ।

୧୯୧୮ର ଏପରି ଅବସ୍ଥା ହେଲା ବେଳକୁ ୧୯୧୯ ମସିହାରେ ଘୋର ବଢ଼ି ମାଡ଼ି ଆସିଲା । ଓଡ଼ିଶା ଉପରେ ଭଗବାନଙ୍କର ଏପରି ଅଭିଶାପ ଲୋକମାନଙ୍କୁ ନିସ୍ବ କରି ଦେଇଥିଲା । କୁଶଭଦ୍ରା ଓ ଭାର୍ଗବୀ ନଦୀର ପାଣି ପୁରୀ ସବ୍‌ଡ଼ିଭିଜନକୁ ଚାଲିବାଟରେ ପରିଣତ କରିଦେଲା । ଲୋକମାନେ ପୋକମାଛିପରି ମଲେ । ଯେଉଁଆଡ଼କୁ ଚାହିଁଲେ ଖାଲି କଙ୍କାଳମୟ ମଣିଷ ଦେଖା ଯାଉଥିଲା । ଲୋକମାନଙ୍କର ଏପରି ଅବସ୍ଥା ଦେଖି ଗୋପବନ୍ଧୁଙ୍କର ଦୁଇ ଆଖିରୁ ଧାରା ଶ୍ରାବଣ ପରି ଲୁହଧାର ବୋହି ପଡ଼ିଲା ।

ବନ୍ୟା ଓ ଦୁର୍ଭିକ୍ଷ ପାଇଁ ଗୋପବନ୍ଧୁ ଚୂଡ଼ା, ଚାଉଳ ବାଣ୍ଟିଲେ । ସେତେବେଳେ ଇଂରେଜ ସରକାର

ଦେଶକୁ ଶାସନ କରୁଥିଲେ । ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିଛି ବୋଲି ଗୋପବନ୍ଧୁ ଇଂରେଜ ସରକାରଙ୍କ ନିକଟରେ ଯୁକ୍ତି କଲେ । ଓଡ଼ିଶାକୁ ସାହାଯ୍ୟ କରିବାକୁ ଏବଂ ସେମାନଙ୍କୁ ଖାଦ୍ୟ ଯୋଗାଇବା ପାଇଁ ବାରମ୍ବାର ଅନୁରୋଧ କଲେ ।

ଗୋପବନ୍ଧୁଙ୍କର ବାରମ୍ବାର କରୁଣ ନିବେଦନ ଶୁଣି ଇଂରେଜ ସରକାର ଗ୍ରୁନିଂ ସାହେବଙ୍କୁ ଦୁର୍ଭିକ୍ଷ ଅଞ୍ଚଳ ବୁଲି ଦେଖିବା ପାଇଁ ପଠାଇଲେ । ଗୋରା ସାହେବ ପଲ୍ଲୀ ଅଞ୍ଚଳକୁ ଯିବେ କିପରି ? ଗଡ଼ିଆଡ଼େ କାଦୁଅ ରାସ୍ତା । କିଛି ବାଟ ଯାଇ ଫେରି ଆସିଲେ । ପରିଶେଷରେ ଗୋରା ସାହେବ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିନାହିଁ ବୋଲି ତାଙ୍କ ରିପୋର୍ଟରେ ଲେଖିଲେ । ଇଂରେଜ ସରକାର ଏ କଥାକୁ ପ୍ରଥମେ ବିଶ୍ୱାସ କଲେ ।

ଗୋପବନ୍ଧୁ ଶୁଣିଲେ ଗ୍ରୁନିଂ ସାହେବ କହୁଛନ୍ତି ଯେ- ଓଡ଼ିଶାର ଭାଇଭଉଣୀମାନେ ସୁନା ଖଡ଼ୁ ପିନ୍ଧିଛନ୍ତି ଏବଂ କ୍ଷେତରେ ଭଲ ଫସଲ ହୋଇଛି । ଏଣୁ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିନି । ଗୋପବନ୍ଧୁଙ୍କ ହୃଦୟ ଏ ନିଷ୍ଠୁର ଅତ୍ୟାଚାର ସହିଲା ନାହିଁ । ସେ ଗ୍ରୁନିଂ ସାହେବଙ୍କ ମତକୁ ଖଣ୍ଡନ କରି ତାଙ୍କୁ ବିରୋଧ କରି ଲାଟ ସାହେବଙ୍କୁ କହିଥିଲେ—ପିତଳ ଖଡ଼ୁକୁ ସୁନା ଖଡ଼ୁ ବୋଲି ଆପଣଙ୍କୁ କୁହାଯାଇଛି । ବାଲୁଙ୍ଗାପୂର୍ଣ୍ଣ କ୍ଷେତ ଆପଣଙ୍କୁ ଭଲ କ୍ଷେତ ପରି ଯଦି ଦେଖାଗଲା, ତେବେ କଙ୍କାଳମୟ ମଣିଷଙ୍କ ଫଟୋ ଦେଖନ୍ତୁ ଏବଂ ଭାବନ୍ତୁ ଏମାନଙ୍କ ଚେହେରା ଏପରି କାହିଁକି ହୋଇଛି ।

ନିରୀହ ଜନତାଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କରି ପୁଣି କହିଥିଲେ "ରାଜ୍ୟର ପାଳକ ରାଜାଙ୍କ ପୁତ୍ରତୁଲ୍ୟ । ଏ ରାଷ୍ଟ୍ର ଦେଶରେ ଯଦି କେହି ଖାଇବାକୁ ନ ପାଇ ମରେ, ତେବେ ତାର ଶେଷ ନିଶ୍ୱାସ ସରକାରଙ୍କ ଉପରେ ପଡ଼ିବ । ସରକାରଙ୍କ ଏପରି ଦୁର୍ଦ୍ଦଶା ସମୟରେ କର୍ତ୍ତବ୍ୟ ରହିଛି ।" ଏହା କହୁସାରି ଗୋପବନ୍ଧୁ କାନ୍ଦି ପକାଇଥିଲେ ।

ଗୋପବନ୍ଧୁଙ୍କର ନିର୍ଭୀକ କଥା ଶୁଣି ଲାଟସାହେବ ନିଜେ ଦୁର୍ଭିକ୍ଷ ଅଞ୍ଚଳକୁ ଦେଖିବା ପାଇଁ ଆସିଲେ । ଲୋକମାନଙ୍କର ଅବସ୍ଥା ଦେଖି ଲାଟସାହେବ ଦୁଃଖ କରିଥିଲେ । ଗୋପବନ୍ଧୁଙ୍କ ନିକଟରେ ମସ୍ତକ ଅବନତ କରିଥିଲେ । ଶେଷରେ ସରକାର ସାହାଯ୍ୟ କରିଥିଲେ ।

## କର୍ତ୍ତବ୍ୟ ପରାୟଣତା

ଗୋପବନ୍ଧୁଙ୍କ ଜୀବନରେ ଅନେକ ଝଡ଼ଝଞ୍ଜା ଆସିଥିଲା । ତଥାପି ସେ କେବେ ଭାଙ୍ଗି ପଡ଼ି ନଥିଲେ । ଲୋକ ସେବାକୁ ସେ ଜୀବନର ପରମ କର୍ତ୍ତବ୍ୟ ମଣିଥିଲେ । ତେଣୁ ସେ ଲେଖିଛନ୍ତି—

"ପଛଘୁଞ୍ଚା ନାହିଁ ବୀରର ଜାତକେ
ନ ମରେ ସେ କେଉଁ ପରାଣ ଆତଙ୍କେ ।"

ଗୋପବନ୍ଧୁ ଜଣେ କର୍ତ୍ତବ୍ୟ ପରାୟଣ ଲୋକ ଥିଲେ । ସେ କର୍ତ୍ତବ୍ୟକୁ କେବେହେଲେ ଅବହେଳା କରି ନାହାନ୍ତି । ମାଆ, ବାପା, ପୁଅ ଏବଂ ପତ୍ନୀ ସମସ୍ତଙ୍କ

ବିଯୋଗକୁ ସେ କର୍ତ୍ତବ୍ୟ ପଥରେ ଆହୂତି ଦେଇ ନିଜ ଜୀବନକୁ ମଧ୍ୟ ଉତ୍ସର୍ଗ କରି ଦେଇଥିଲେ । ଦାରିଦ୍ର୍ୟର ନିର୍ମମ ଚାବୁକ ଆଘାତକୁ ସେ ଆନନ୍ଦ ମନରେ ସହୁଥିଲେ । ତଥାପି ନିଜ କର୍ତ୍ତବ୍ୟ ପଥରୁ ଓହରି ଯାଇ ନାହାନ୍ତି । ଜାତିର ଉନ୍ନତି ଓ ଜନତାର ସେବା ଥିଲା ତାଙ୍କ ଜୀବନର ଶ୍ରେଷ୍ଠ ବ୍ରତ ।

## ଗଣସେବାର ଲକ୍ଷ୍ୟ

ଗୋପବନ୍ଧୁ ୧୯୧୭ ଠାରୁ ୧୯୨୧ ପର୍ଯ୍ୟନ୍ତ ବିହାର-ଓଡ଼ିଶା ବିଧାନ ସଭାର ସଦସ୍ୟ ଥିଲେ । ଏହି ଦାୟିତ୍ୱ ବହନ କରି ନିଜ ଜାତି ଓ ଜନତାର ଉପକାର କରିବା ନିମନ୍ତେ ସେ ଦୃଢ଼ ପ୍ରତିଜ୍ଞା କରିଥିଲେ । ଓଡ଼ିଶାର ପ୍ରକୃତ ଅଭାବ ଅସୁବିଧାକୁ ନିଜେ ବିଭିନ୍ନ ଅଞ୍ଚଳ ବୁଲି ବୁଲି ଦେଖୁଥିଲେ ଏବଂ ତଥ୍ୟସବୁ ସଂଗ୍ରହ କରୁଥିଲେ ।

ବ୍ୟବସ୍ଥାପକ ହିସାବରେ ଗୋପବନ୍ଧୁ ମୁଖ୍ୟତଃ ଚାରୋଟି ପ୍ରଶ୍ନର ସମାଧାନ ପାଇଁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଲଢ଼ୁଥିଲେ । ସେହି ଚାରୋଟି ହେଲା—ବିଚ୍ଛିନ୍ନ ହୋଇଯାଇଥିବା ଅଞ୍ଚଳ ଗୁଡ଼ିକୁ ଓଡ଼ିଶାରେ ମିଶାଇବା, ବନ୍ୟା ଓ ଦୁର୍ଭିକ୍ଷର ନିରାକରଣ, ବିନା ଶୁଳ୍କରେ ଲବଣ ଉତ୍ପାଦନ ଏବଂ ସତ୍ୟବାଦୀ ବିଦ୍ୟାଳୟର ଢାଞ୍ଚାରେ ସମସ୍ତ ବିଦ୍ୟାଳୟରେ ଜାତୀୟ ଶିକ୍ଷାର ସଂପ୍ରସାରଣ । ଏହାହିଁ ଥିଲା ତାଙ୍କ ଗଣ ସେବାର ପ୍ରଧାନ ଲକ୍ଷ୍ୟ ।

ଗୋପବନ୍ଧୁଙ୍କ ଯୋଗୁଁ ରେଭେନ୍‌ସା କଲେଜରେ ଇଂରାଜୀରେ ଏମ୍. ଏ. ଶ୍ରେଣୀ ଖୋଲା ଯାଇଥିଲା, ଆଇନ୍ ପାଠ୍ୟକ୍ରମ ପ୍ରବର୍ତ୍ତିତ ହୋଇଥିଲା, ପୁରୀର ସଂସ୍କୃତ କଲେଜ ସରକାରୀ ଅନୁଷ୍ଠାନ ରୂପେ ଗୃହୀତ ହୋଇଥିଲା, ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରୁ ଶତକଡ଼ା ଦଶଜଣ ବିନା ଦରମାରେ ପଢିବା ପାଇଁ ସୁଯୋଗ ପାଇଥିଲେ ଏବଂ କଟକରେ ଇଞ୍ଜିନିୟରିଂ ସ୍କୁଲ ମଧ୍ୟ ସ୍ଥାପନ ହୋଇଥିଲା । ଖାଲି ଏତିକି ନୁହେଁ, ୧୯୩୭ ମସିହାରେ ଓଡ଼ିଶା ପାଇଁ ସ୍ୱାଧୀନତା ହାସଲ କରିବା ଦିଗରେ ଗୋପବନ୍ଧୁ ଅନେକ ଉଦ୍ୟମ କରିଥିଲେ ।

## ଜାତୀୟତାର ଉତ୍ସ

୧୯୦୩ ମସିହା ଠାରୁ ୧୯୨୦ ମସିହା ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀ ଗୋପବନ୍ଧୁଙ୍କର ଆଦର୍ଶ କର୍ମକ୍ଷେତ୍ର ଥିଲା । ୧୯୧୯ ମସିହା ଏପ୍ରିଲ ୧୯ ତାରିଖରେ କଟକଠାରେ ଉତ୍କଳ ସମ୍ମିଳନୀର ୧୪ଶ ଅଧିବେଶନ ଆରମ୍ଭ ହୋଇଥିଲା । ଏହି ଅଧିବେଶନରେ ଗୋପବନ୍ଧୁ ସଭାପତି ହୋଇଥିଲେ । ତାଙ୍କ ଭାଷଣରେ ସେ ସମଗ୍ର ଓଡ଼ିଶାବାସୀଙ୍କୁ ମହାଭାରତୀୟ ଭାବର ଆଦର୍ଶ ବିଷୟରେ ଚେତାଇ ଦେଇଥିଲେ । ଓଡ଼ିଶା-ବାସୀଙ୍କ ପ୍ରାଣରେ କେବଳ ଓଡ଼ିଆ ପ୍ରୀତି ନୁହେଁ; ସମଗ୍ର ଭାରତ ବର୍ଷର ମମତାକୁ ଜାଗ୍ରତ କରିବା ପାଇଁ ଆହ୍ୱାନ ଦେଇଥିଲେ ।

ଗୋପବନ୍ଧୁ ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନକୁ ସ୍ୱାଗତ କରିଥିଲେ । ଗାନ୍ଧୀଙ୍କର ନୀତିକୁ ଅନୁସରଣ କରିବା ପାଇଁ ଲୋକମାନଙ୍କୁ ଚେତାଇ ଦେଉ-ଥିଲେ । ଗାନ୍ଧିଜୀଙ୍କର ଅସହଯୋଗ ନୀତିକୁ କାର୍ଯ୍ୟରେ ପରିଣତ କରିବା ପାଇଁ ସେ ଚାହିଁଥିଲେ । ଏଣୁ ପ୍ରଥମେ ଗୋପବନ୍ଧୁ ବିହାର-ଓଡ଼ିଶା ବିଧାନ ସଭାରୁ ଇସ୍ତଫା ଦେଇ-ଥିଲେ । ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ କଂଗ୍ରେସ କମିଟି ଗଠନ କରିବା ପାଇଁ ଅନେକ ଚେଷ୍ଟା କରିଥିଲେ । ନିଜେ ଗୋପବନ୍ଧୁ ବିଭିନ୍ନ ଅଞ୍ଚଳକୁ ଯାଇ ଯୁବକମାନଙ୍କ ମନରେ ଜାତୀୟ ଭାବଧାରାର ସୂଅ ଛୁଟାଇ ଦେଉଥିଲେ । ଏହା ଫଳରେ ଗାଁ ଗାଁରେ କଂଗ୍ରେସ କମିଟି ଗଢି ଉଠିଲା ଏବଂ ଛାତ୍ରମାନେ ସ୍କୁଲ କଲେଜ ଛାଡ଼ି ଜାତୀୟ ଆନ୍ଦୋଳନରେ ମାତି ଉଠିଲେ ।

## ସମାଜର ପ୍ରତିଷ୍ଠାତା 'ସମାଜ'

ଓଡ଼ିଶାବାସୀଙ୍କର ଅଭାବ ଅସୁବିଧା ଦୂର କରିବା ପାଇଁ ଗୋପବନ୍ଧୁ ନିଜେ ଆନ୍ତରିକତା ସହ କାର୍ଯ୍ୟ କରୁଥିଲେ । ଓଡ଼ିଶାକୁ ସ୍ୱାଧୀନ କରିବା ସଙ୍ଗେ ସଙ୍ଗେ ଭାରତ ବର୍ଷକୁ ଇଂରାଜୀ ସରକାରଙ୍କ ହାତରୁ ମୁକ୍ତ କରିବା ମଧ୍ୟ ତାଙ୍କର ଲକ୍ଷ୍ୟ ଥିଲା । ଏଣୁ ଗୋପବନ୍ଧୁ ୧୯୧୯ ମସିହା ଅକ୍ଟୋବର ମାସ ୪ ତାରିଖ ଦଶହରା ଦିନ "ସମାଜ"

ପତ୍ରିକା ପ୍ରକାଶ କଲେ । ପ୍ରଥମେ ଏହି ପତ୍ରିକାଟି ପ୍ରତି ସପ୍ତାହରେ ପ୍ରକାଶ ପାଇଲା । ଏହି ସମ୍ବାଦ ପତ୍ରଟି ଲୋକ-ମାନଙ୍କର ଅଭାବ ଅଭିଳାଷକୁ ଖୋଲାଖୋଲି ପ୍ରକାଶ କରୁଥିଲା । ପରେ ଏହି ପତ୍ରିକା ଦୈନିକ ରୂପେ ପ୍ରକାଶିତ ହେଲା ।

'ସମାଜ' ପ୍ରକାଶ କରିବା ପୂର୍ବରୁ ଗୋପବନ୍ଧୁ ବ୍ରହ୍ମପୁରର 'ଆଶା' ପତ୍ରିକା ସହ ସମ୍ପର୍କ ରଖିଥିଲେ । ଏହି 'ଆଶା' ପତ୍ରିକାଟି ବ୍ରହ୍ମପୁରରେ ୧୯୧୩ ମସିହା ଏପ୍ରିଲ ମାସ ୧୩ ତାରିଖରେ ପ୍ରକାଶିତ ହୋଇଥିଲା । ଏହାକୁ ଶଶିଭୂଷଣ ରଥ ପ୍ରତିଷ୍ଠା କରିଥିଲେ । ସେତେବେଳେ 'ଉତ୍କଳ ଦୀପିକା' ନାମକ ଗୋଟିଏ ପତ୍ରିକା ମଧ୍ୟ ପ୍ରକାଶ ପାଉଥିଲା । ଗୋପବନ୍ଧୁଙ୍କର "ସମାଜ" ପତ୍ରିକା ଲୋକଙ୍କ ଦ୍ୱାରା ବେଶ ଆଦରଣୀୟ ହେବା ସାଙ୍ଗେ ସାଙ୍ଗେ ଲୋକ-ମାନେ ଜାତୀୟ ଭାବଧାରାରେ ପରିଚାଳିତ ହେବାକୁ ଲାଗିଲେ ।

## ଅସହଯୋଗ ଆନ୍ଦୋଳନ

ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କଲେ । ଇଂରାଜୀ ସରକାର ତାଙ୍କ ଉପରେ ରାଗିଗଲେ । ୧୯୨୧ ମସିହା ସେପ୍ଟେମ୍ବର ୧୦ ତାରିଖରେ ତାଙ୍କ ଉପରେ ୧୪୪ ଧାରା ଜାରୀ ହେଲା ଏବଂ ତାଙ୍କ ମୁହଁକୁ ବନ୍ଦ କରିବା ପାଇଁ ହୁକୁମ ହେଲା । ଏହାଛଡ଼ା ତାଙ୍କ ଉପରେ ଅନେକ ମିଛ ରିପୋର୍ଟ ପ୍ରସ୍ତୁତ କରାଗଲା ।

ଗୋପବନ୍ଧୁ ଇଂରେଜୀ ସରକାରଙ୍କ ଆଇନ୍‌କୁ ଡର-ଯାଇ ନ ଥିଲେ କି ସେ ଜାତୀୟ ଆନ୍ଦୋଳନରୁ ଓହରି ଯାଇ ନଥିଲେ । ବରଂ ଏହି ଆନ୍ଦୋଳନକୁ ଅଧିକ ତେଜୀୟାନ କରିଥିଲେ । ସଭାରେ ଭାଷଣ ଦେବା ପାଇଁ ମନା କରିଥିଲେ ମଧ୍ୟ, ସେ ସମସ୍ତ ବିବରଣୀ କାଗଜରେ ଛାପି ଲୋକଙ୍କୁ ଶୁଣାଇ ପାରୁଥିଲେ ଏବଂ ଇଂରେଜ ସରକାରଙ୍କ ଆଇନ୍‌କୁ ପଣ୍ଡ କରି ଦେଉଥିଲେ ।

୧୯୨୧ ମସିହା ମେ ମାସ ୩୧ ତାରିଖ ଦିନ ଗୋପ-ବନ୍ଧୁଙ୍କୁ ଇଂରେଜ ସରକାର ଜେଲକୁ ପଠାଇଲେ । କିଛିଦିନ ପାଇଁ କଟକ ଜେଲ୍‌ରେ ତାଙ୍କୁ ରଖାଗଲା । ତା ପରେ ପରେ ହଜାରୀବାଗ ଜେଲ୍‌କୁ ନିଆଯାଇଥିଲା । ସେଠାରେ ଓଡ଼ିଶାର ଦୁଇଜଣ ବ୍ୟକ୍ତି ବନ୍ଦୀ ହୋଇ ରହିଥିଲେ । ଗୋପବନ୍ଧୁ ନିଜେ ହାତରେ ରୋଷେଇ କରି ଖାଉଥିଲେ । ଏହି ଖାଦ୍ୟକୁ ଓଡ଼ିଶାର ଦୁଇଜଣଙ୍କ ସହ ମିଶି ଭୋଜନ କରୁଥିଲେ । ସେ ଦୁଇଜଣ ହେଲେ—ଡାକ୍ତର ଏକରାମ ରସୁଲ ଓ ଭାଗୀରଥି ମହାପାତ୍ର ।

## ସାହିତ୍ୟ ପ୍ରୀତି

ଗୋପବନ୍ଧୁ ଖୁବ୍ କମ୍ ବୟସରୁ ସାହିତ୍ୟ ପ୍ରତି ଆଗ୍ରହୀ ହୋଇଥିଲେ । ପିଲାଦିନେ ଭାଗବତ ପାଠ କରି ସମସ୍ତଙ୍କୁ ଖୁସି କରାଇବା ସଙ୍ଗେ ସଙ୍ଗେ ନିଜେ ଭାଗବତର ଭାଷା ଦ୍ୱାରା ପ୍ରଭାବିତ ହୋଇଥିଲେ । ଗୋପବନ୍ଧୁଙ୍କ ଶୈଳୀ ଅତି ସରଳ ।

ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିବା ସମୟରେ 'ଇନ୍ଦ୍ର ଧନୁ' ପତ୍ରିକାରେ ତାଙ୍କର ଲେଖା ପ୍ରକାଶ ପାଉଥିଲା । 'ଅବକାଶ ଚିନ୍ତା' ନାମରେ ପୁସ୍ତକ ୧୮୯୯ ମସିହାରେ ପ୍ରଥମେ ପ୍ରକାଶିତ ହେଲା । ଗୋପବନ୍ଧୁ ଯେତେବେଳେ ବନ୍ଦୀ ହେଲେ ସେହି ବନ୍ଦୀଶାଳାରେ ଅନେକ କବିତା ରଚନା କରିଥିଲେ । ସେଗୁଡ଼ିକ ପରେ 'ବନ୍ଦୀର ଆତ୍ମକଥା', 'କାରାକବିତା', 'ଗୋ-ମହାତ୍ମ୍ୟ' ଏବଂ 'ଧର୍ମପଦ' ନାମରେ ପ୍ରକାଶ ପାଇଥିଲା ।

ଓଡ଼ିଆ ସାହିତ୍ୟରେ ଗୋପବନ୍ଧୁ ଜୀବନୀ ମୂଳକ କବିତା ରଚନା କରିବାରେ ପ୍ରଥମ ଶିଳ୍ପୀ । ମହାପୁରୁଷ, ମହାମାନବ ଗୋପବନ୍ଧୁ ନିଜ ଜୀବନରେ ଅନେକ ଦୁଃଖ, କଷ୍ଟକୁ ଅଭିନନ୍ଦନ କରାଇବା ସଙ୍ଗେ ସଙ୍ଗେ ସାହିତ୍ୟ କ୍ଷେତ୍ର ପ୍ରତି ତାଙ୍କର ମମତା ଅତୁଟ ରହିଥିଲା । ଜୀବନରେ ଅନେକ ପ୍ରବନ୍ଧ ଅନେକ କବିତା ରଚନା କରିଥିଲେ । ସାହିତ୍ୟ ଜଗତକୁ ତାଙ୍କର ଅବଦାନ କମ୍ ନଥିଲା ।

## କର୍ମ ସାଧନା

ଗୋପବନ୍ଧୁ ଜୀବନର ଶେଷ ପର୍ଯ୍ୟନ୍ତ କର୍ମକ୍ଷେତ୍ରରେ ହିଁ କଟାଇ ଥିଲେ । କର୍ମଦ୍ୱାରା ମନୁଷ୍ୟର ଜୀବନ ସାର୍ଥକ ହୋଇ ପାରିବ । କର୍ମ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ରହିଥିଲା । ତେଣୁ ସେ କର୍ମମୟ ଜୀବନକୁ ନେଇ ଲେଖିଛନ୍ତି—

ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ ଦଣ୍ଡ
କର୍ମେ ଜୀଏ ନର ଧର୍ମ ଏକା ତାର
ଜୀବନର ମାନଦଣ୍ଡ ।

ଯେଉଁ କର୍ମ କରିବ ସେଥିରେ କିଛି ଆଶା ରଖନାହିଁ କିମ୍ବା ସେହି କାମକୁ ତୁମେ ନିଜ ପାଇଁ କର ନାହିଁ । ଏହି କଥା ଗୋପବନ୍ଧୁ ମର୍ମେ ମର୍ମେ ଅନୁଭବ କରିଥିଲେ । ସେ ଯେଉଁ କାମ କରୁଥିଲେ, ନିଜ ପାଇଁ ନୁହେଁ, ଦେଶପାଇଁ, ଦରିଦ୍ର ସମାଜ ପାଇଁ । ଜନସାଧାରଣଙ୍କ ହିତ ପାଇଁ ନିଜ ଜୀବନକୁ ସେ ଉତ୍ସର୍ଗ କରି ଦେଇଥିଲେ ।

ଗୋପବନ୍ଧୁଙ୍କ କାମଗୁଡ଼ିକ ଆଦର୍ଶାଭିମୁଖୀ ଥିଲା । ତାଙ୍କର ପ୍ରତ୍ୟେକ କାମକୁ ଈଶ୍ୱରଙ୍କ ନାମରେ ସେ ସାଧନ କରୁଥିଲେ । ନିଜର ଜୀବନ ଓ କର୍ମକୁ ଈଶ୍ୱରଙ୍କ ନିକଟରେ ସମର୍ପି ଦେଇଥିଲେ । ଶ୍ରେଷ୍ଠ କାମ ସବୁ ଈଶ୍ୱରଙ୍କ ଇଚ୍ଛାରେ ହିଁ ହୁଏ ବୋଲି ଗୋପବନ୍ଧୁ କହୁଥିଲେ । ନିଜର କର୍ମ ସାଧନା ପାଇଁ ଗୋପବନ୍ଧୁ ସବୁଠାରୁ ଶକ୍ତିମାନ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରୁଥିଲେ—

"ଧର୍ମ ଅନୁକୂଳ ଯେବେ ମୋ କାମନା ହୁଏ
ସାଧନେ ଶକ୍ତି ଦିଅ ପ୍ରଭୁ ଦୟାମୟ ।"

ଯିଏ ଯେଉଁପରି କାମ କରେ ସିଏ ସେପରି ଫଳପାଏ । ଏହି ବିଶ୍ୱାସ ଗୋପବନ୍ଧୁଙ୍କର ଥିଲା । ଏଥିପାଇଁ ସେ ନିଜେ କର୍ମବାହୀ ହୋଇ ଜୀବନ ବିତାଇ ଥିଲେ ଏବଂ ସମସ୍ତଙ୍କ

କର୍ମଠ ହେବାପାଇଁ ଉପଦେଶ ଦେଉଥିଲେ । ଯେଉଁ କାମ କରୁନ୍ତୁ, ତିସହ କାମରେ ଅହଂକାର କମ୍ବା ଅଭିମାନ ରଖ-ନାହିଁ । ବିନା ସ୍ୱାର୍ଥରେ କାମ କର । ଏଥିପାଇଁ ଗୋପବନ୍ଧୁ ଗାଇଉଠିଛନ୍ତି—

"ନିଜ କଲି କର୍ମ ଭୋଗେ ଜିତେ ନର
ଏଡ଼ି ନ ପାରେ ତା ବ୍ରହ୍ମା ହରିହର ।"

## ବହୁମୁଖୀ ଆଦର୍ଶ

ରାଜନୈତିକ କ୍ଷେତ୍ରରେ ଗୋପବନ୍ଧୁ ଥିଲେ ପ୍ରଥମେ ଉତ୍କଳୀୟ ପରେ ଭାରତୀୟ ଏବଂ ଶେଷରେ ବିଶ୍ୱବାଦୀ । କିନ୍ତୁ ସାହିତ୍ୟ କ୍ଷେତ୍ରରେ ସେ କବି ବା ସାହିତ୍ୟିକଭାବେ ପ୍ରଥମେ ବିଶ୍ୱପ୍ରେମୀ, ପରେ ଭାରତୀୟ ଏବଂ ଶେଷରେ ଓଡ଼ିଆ ।

ଗୋପବନ୍ଧୁ ତାଙ୍କ ବିଶ୍ୱଭାବର ପ୍ରଚାର ଓ ପ୍ରସାର ପାଇଁ 'ସତ୍ୟବାଦୀ' ପତ୍ରିକାରେ ଅନେକ ଲେଖା ପ୍ରକାଶ କରୁ-ଥିଲେ । ବିଶ୍ୱର ମାନବ ପ୍ରେମ ଥିଲା ତାଙ୍କର ଭଗବତ୍ ଚିନ୍ତାର ମୂଳ । ସେ ଏକାଗ୍ର ଚିତ୍ତ ହୋଇ ବିଶ୍ୱମାନବର କଲ୍ୟାଣ ପାଇଁ ଚିନ୍ତା କରୁଥିଲେ । 'ବିଶ୍ୱର ମିଳନ ଚକ୍ର' କବିତାରେ ସେ ଗାଇଉଠିଛନ୍ତି—

"ମୋ ପ୍ରାଣ ପ୍ରେମାଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା ।"

କାରାଗାର ଭିତରେ ଏକୁଟିଆ ବସି ଗୋପବନ୍ଧୁ ଭଗବାନଙ୍କୁ ପ୍ରାର୍ଥନା କରି କହୁଥିଲେ -ଉତ୍କଳବାସୀଙ୍କର ପ୍ରାଣକୁ ବିଶ୍ୱ ପ୍ରେମରେ ଜଡ଼ିତ କରାଇ ଦିଅ । ଏଣୁ ସେ କାରା-କବିତା ମାଧ୍ୟମରେ ଉତ୍କଳ ବାସୀଙ୍କ ପାଇଁ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରି ଲେଖିଛନ୍ତି—

"ଜାତୀୟ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।"

ଗୋପବନ୍ଧୁ ଜଣେ ନିଷ୍ଠାପର ଗଣତନ୍ତ୍ରବାଦୀ ଥିଲେ । ଜନସାଧାରଣ କିପରି ସ୍ୱାଧୀନ ଭାବେ ଜୀବନର ଉନ୍ନତି ଏବଂ ସ୍ୱାଧୀନ ଭାବେ ନିଜ ନିଜର ମତ ପ୍ରକାଶ କରିବେ, ଏଥିପାଇଁ ସେ ସଂଗ୍ରାମ କରିଥିଲେ । ଦେଶରେ ଗଣତାନ୍ତ୍ରିକ ଶାସନ ସଂସ୍ଥା ଓ ସମାଜବାଦ ପ୍ରତିଷ୍ଠା ପାଇଁ ଉତ୍କଳର ମଣି ଗୋପ-ବନ୍ଧୁ ମଧ୍ୟ ଉତ୍କୃଷ୍ଟ ଧରଣର ଚିନ୍ତାଧାରା ପ୍ରକାଶ କରିଥିଲେ ।

ଦରିଦ୍ର, ନୀଚସମାଜ, ଶୋଷିତ, ଲାଞ୍ଛିତ ଜନତାଙ୍କର ସଙ୍କଟମୟ ଅବସ୍ଥା ଏବଂ ଦୁଃଖକୁ ଦେଖି ତାଙ୍କ ପ୍ରାଣ କାନ୍ଦି ଉଠୁଥିଲା । ସେ ଦରଦୀ ହୃଦୟରୁ ଏବଂ ଜାତିର କଣ୍ଠରେ ଗାଇଛନ୍ତି-

"ଉତ୍କଳର କେତେ କନ୍ୟା ନାରିଖାର
ନ କରନ୍ତି ପେଟ ପୂରାଇ ଆହାର ।
ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ
ଫୁଟେ ନାହିଁ ଅଙ୍ଗେ କେବେ ନବ୍ଭୂଷଣ ।"

× × ×

"ଥିଲେ ଯେହୁ ମଲ୍ଲ ଉତ୍କଳ ସୈନିକ
ପାଇକ ପ୍ରଧାନ ମାଗୁଛନ୍ତି ଭିକ
ଦେହେ ନାହିଁ ମାଂସ ଦୋହଲୁଛି କଣ୍ଠା
ଅନାହାରେ ଆହା ନ ଉଠଇ ଅଣ୍ଟା ।"

ଏଭଳି ପରିସ୍ଥିତିର ପ୍ରତିକାର ପାଇଁ ଗଣତନ୍ତ୍ର ଶାସନହିଁ ଏକମାତ୍ର ରାସ୍ତା । ଏହି ଶାସନକୁ ସମାଜବାଦର ମୂଳଦୁଆରୂପେ ଗ୍ରହଣ କଲେ ଦେଶର ଦୁଃଖ, କଷ୍ଟ, ଦାରିଦ୍ର୍ୟ ଅନାହାର ପ୍ରଭୃତି ଦୂର ହେବ ବୋଲି ସେ ଆଶା କରିଥିଲେ । ସମାଜବାଦକୁ ବଦଳାଇବା ପାଇଁ ସତ୍ୟ, ଶାନ୍ତି ଓ ଅହିଂସା ମାର୍ଗହିଁ ଶ୍ରେଷ୍ଠ ମାର୍ଗ ବୋଲି ଗୋପବନ୍ଧୁ କହୁଥିଲେ । ଏତିହି, ପରମେଶ୍ୱର ଭଗବତ ପ୍ରେମରେ ତାଙ୍କର ବିଶ୍ୱାସ ଥିଲା । ତେଣୁ ସେ ଲେଖିଛନ୍ତି—

"ଅନ୍ୟାୟ ଅଧର୍ମ ପାପ ଅତ୍ୟାଚାର
ମାନେ ଅବା ଶେଷେ ସତ୍ୟ ପାଖେ ହାର ।
ଏ ବିଶ୍ୱାସେ ସର୍ବେ ଦୃଢ଼ କର ମନ
ସ୍ୱରାଜ୍ୟ ଧରମ କର ଆଚରଣ ।"

## ହିତୋପଦେଶ

ଗୋପବନ୍ଧୁ ଆତ୍ମନିର୍ଭରଶୀଳ ହେବାପାଇଁ ଲୋକଙ୍କୁ ଉପଦେଶ ଦେଉଥିଲେ । କୃଷି ଓ କୁଟୀରଶିଳ୍ପର ବିକାଶ ଉପରେ ଗୋପବନ୍ଧୁ ବିଶେଷ ଦୃଷ୍ଟି ଦେଉଥିଲେ । ନିଜ ଦେଶର ଲୋକମାନେ ଖାଇବାକୁ ମୁଠାଏ ଏବଂ ପିନ୍ଧିବାକୁ

କନା ଖଣ୍ଡିଏ ପାଇଁ ପରଦେଶ ଉପରେ ନିର୍ଭର କରିବାକୁ ସେ ଜମା ପସନ୍ଦ କରୁ ନ ଥିଲେ । ଗୋପବନ୍ଧୁ ନିଶା ପ୍ରଚଳନର ବିରୋଧୀ ଥିଲେ । ମାଲିମକଦମା ଇତ୍ୟାଦିରେ ଓଡ଼ିଶାର ଗରୀବ ଅଧିବାସୀମାନେ ଦାରିଦ୍ର୍ୟର ସୀମାକୁ ଚାଲି-ଯାଇ ନିଃସ୍ୱ ନ ହେବା ପାଇଁ ସେ ସବୁବେଳେ ଚିନ୍ତା କରୁଥିଲେ ।

ଇଂରେଜୀ ସରକାର ଅତି ବେଶୀ କର ନେଉଥିଲା । ଏହା ଫଳରେ ଲୋକମାନେ ନିଜକୁ ନିଃସ୍ୱ ମନେ କରୁଥିଲେ । ଅର୍ଥନୀତିକୁ ଇଂରେଜ ସରକାର ଶୋଷଣ କରୁଥିଲା । ଏହାର ବିରୋଧରେ ଗୋପବନ୍ଧୁ ଲେଖିଛନ୍ତି—

"କେତେ ନାମେ କେତେ ପ୍ରକାରର କର
ଦେଇ ପ୍ରଜାଙ୍କର ଭାଙ୍ଗି ଲାଣି ଘର ।
ଖାଇବା ବାସନ ହେଉଛି ନିଲାମ
କେତେ ହେଲେ ନାହିଁ କରର ବିରାମ ।"

ଉତ୍କଳର ଅତୀତ ସମୃଦ୍ଧି ଗୌରବରେ ଗୌରବା-ନ୍ୱିତ ହୋଇ ଗୋପବନ୍ଧୁ ଉତ୍କଳବାସୀଙ୍କ ମନକୁ ଅତୀତର ପ୍ରାଚୁର୍ଯ୍ୟ ଦିଗକୁ ଟାଣିନେବା ପାଇଁ ଗାଇଥିଲେ—

"କାହିଁ ଗଲା ପୂର୍ବ ଓଡ଼ିଆ ବୋଇତ ?
କାହିଁ ସେ ନାବିକ ଉଦ୍ଦାମ ସଙ୍ଗୀତ ?
ଜଳପଥେ କାହିଁ ବିଦେଶ ଗମନ ?
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବଧନ ?

ବନ୍ଦୀ ଅବସ୍ଥାରେ ରହି ସେ ଉତ୍କଳ ବାସୀଙ୍କୁ ଉପଦେଶ ଦେଇ କହୁଥିଲେ ଯେ ମାମଲାରେ ବୁଦ୍ଧି ଖେଳାଇ ଦରିଦ୍ର

ହୁଅନାହିଁ । ଦେଶୀ ଲୁଗା ପିନ୍ଧ, ବିଦେଶୀ ଲୁଗା ପରିତ୍ୟାଗ କର । କବିତା ଲେଖି ଉପଦେଶ ଦେଇଥିଲେ—

"ଅରଟ ଚଳାଅ ପ୍ରତି ଘରେ ଘରେ
ଗ୍ରାମର କଳହ ତୁଟାଅ ଗ୍ରାମରେ ।

× × ×

ଚଳାଅ ଅରଟ ଚାହିଁ ମନ ଭୀତି
ତେଜ ଉଚ ନୀଚ ଘୃଣା ଭେଦ ନୀତି ।
ଚୋରୀ, ନାରୀ, ନିଶା ଆଦି ଦୁରାଚାର
ନ କରୁ ଦୂଷିତ ଗ୍ରାମ ପରିବାର ।"

## ଧର୍ମାନୁରାଗ

ପଣ୍ଡିତ ଗୋପବନ୍ଧୁ ଜଣେ ଧର୍ମ ପ୍ରାଣ ଲୋକ ଥିଲେ । ସେ ତାଙ୍କର ସମସ୍ତ କାମକୁ ଈଶ୍ୱରଙ୍କ ନାମ ନେଇ ଆରମ୍ଭ ଓ ଶେଷ କରୁଥିଲେ । ସମସ୍ତ କାର୍ଯ୍ୟର ମୂଳରେ ଭଗବାନ ଅଛନ୍ତି ବୋଲି ତାଙ୍କର ବିଶ୍ୱାସ ଥିଲା । ସେ ବାଳକ ଥିବା ସମୟରେ ଭାଗବତର ସପ୍ତାଙ୍ଗ ପାଠ କରିଥିଲେ । ଅରୁଆ, ନିରାମିଷ ଖାଦ୍ୟ ଏବଂ ଭାଗବତ ଚିହ୍ନକୁ ପୂଜା କରି ସାତଦିନ ଭିତରେ ପାଠ କରି ଶେଷ କରୁଥିଲେ । ଏହାକୁ ସପ୍ତାଙ୍ଗ କୁହାଯାଏ ।

ଗୋପବନ୍ଧୁ ସତ୍ୟ, ଶିବ ଓ ସୁନ୍ଦରର ଉପାସକ ଥିଲେ । ନିଜେ ଗୋପବନ୍ଧୁ ଭଗବାନଙ୍କ ସହ ନିଜ ଆତ୍ମାକୁ ମିଳାଇ

ଦେଇ, ପ୍ରଭୁଙ୍କ ପାଦତଳେ ନିଜକୁ ସମ୍ପୂର୍ଣ୍ଣ ରୂପେ ସମର୍ପି ଦେଇ ଆନନ୍ଦରେ ବିଭୋର ହୋଇ ଗାଉଛନ୍ତି—

"ଜାଣେ ଅଛନ୍ତି ମୋ ପରାଣପତି
ସୁନ୍ଦର ସତ୍ୟ ଶିବ ଅଗତିଗତି ।
ରହନ୍ତି ନିତି ତାଙ୍କ ବାଟ ଅନାଇ
ହୃଦି-ପଲଙ୍କେ ଫୁଲ ସେଯ ସଜାଇ ।"

ବର୍ତ୍ତମାନ ଯୁଗର ବିଭିନ୍ନ ଧର୍ମ କର୍ମ, ପୂଜା ଉପାସନାରେ ଜନତାର ଆନ୍ତରିକତାର ଘୋର ଅଭାବ ହୋଇଛି । ଲୋକମାନେ ଦେଖାଣିଆ ମନୋଭାବ ନେଇ ପୂଜା କରୁଛନ୍ତି, ଧର୍ମ ନାମରେ ଅନୁଷ୍ଠାନ ଗଢୁଛନ୍ତି । ଏଣୁ ସେ ଲେଖିଛନ୍ତି—

"ବାଜେ ଶଙ୍ଖ, ବାଜେ ଘଣ୍ଟ, ପଡ଼େ କରତାଳି,
ମୃଦଙ୍ଗ, ମଦଳ ବାଜେ, ଶୁଭଇ ତାଳି ।
ଧର୍ମ ନୃତ୍ୟ କରୁଅଛନ୍ତି ମତ୍ତ ବହୁଜନ,
ଏ ନୃତ୍ୟରେ କିନ୍ତୁ ଆହା ନାହିଁ ତ ଜୀବନ !
ଶୁଣି ଏହି ସଂକୀର୍ତ୍ତନ ନାଚେ ନାହିଁ ପ୍ରାଣ,
ବିଗଳିତ ନୁହେ ହୃଦ ଶୁଣି ଏହି ଗାନ ।"

ଗୋପବନ୍ଧୁ ଗୋରୁ ଗାଈଙ୍କ ସେବାକୁ ଧର୍ମ କାର୍ଯ୍ୟ ବୋଲି କହୁଥିଲେ । ଧର୍ମଶାସ୍ତ୍ର ଓ ପୁରାଣରୁ ଉଦାହରଣ ଆଣି ଗୋ-ସେବା ପରମ ଧର୍ମ ବୋଲି ବର୍ଣ୍ଣନା କରିଛନ୍ତି । ତାଙ୍କ ଭାଷାରେ—

"ଗୋ ସେବା ସର୍ବ ଧର୍ମେ ସାର
ଏହା ବୁଝିଲେ ସର୍ବ ନର ।

ହୋଇବ ଏ ସଂସାର ସ୍ୱର୍ଗ
ଲଭିବେ ଲୋକେ ଅପବର୍ଗ ।"

ଗୋପବନ୍ଧୁ ନିଜର ସ୍ୱାର୍ଥ ପାଇଁ କୌଣସି ଲକ୍ଷ୍ୟ ନ ରଖି ତାଙ୍କର ଧର୍ମ ପାଳନ କରିଛନ୍ତି । ତାଙ୍କ ନିଜର ଚେତନା ବିଶ୍ୱର ଚେତନା ଥିଲା । ବିଶ୍ୱପ୍ରେମ, ନିଜ ଦେଶର ସ୍ୱାଧୀନ ଏବଂ ଈଶ୍ୱରଙ୍କୁ ଭକ୍ତି କରିବା ଏହି ତ୍ରିବେଣୀ ଧାରା ତାଙ୍କ ଜୀବନର ସାଧନା ଥିଲା ।

## ପଲ୍ଲୀ ଉନ୍ନୟନ

ଗୋପବନ୍ଧୁ ପଲ୍ଲୀ ଅଞ୍ଚଳରେ ଜନ୍ମ ହୋଇଥିଲେ । ପଲ୍ଲୀର ପ୍ରାକୃତିକ ପରିବେଶ ମଧ୍ୟରେ ସେ ଲାଳିତ ପାଳିତ ହୋଇଛନ୍ତି । ତେଣୁ ସେ ସହର ସଭ୍ୟତା ପ୍ରତି ଆକୃଷ୍ଟ ନ ହୋଇ ପଲ୍ଲୀ ଜୀବନର ଉନ୍ନତି ପାଇଁ ମନପ୍ରାଣ ଢାଳି ଦେଇଥିଲେ । ପଲ୍ଲୀ ଅଞ୍ଚଳର ସରଳ, ନିରାଡ଼ମ୍ବର ଜୀବନ ହିଁ ସର୍ବଶ୍ରେଷ୍ଠ ଜୀବନ ବୋଲି ଗୋପବନ୍ଧୁ କହିଛନ୍ତି ।

ପଲ୍ଲୀ ଅଞ୍ଚଳରେ ଲୋକମାନଙ୍କର ପରିବର୍ତ୍ତନ ଦେଖି ଗୋପବନ୍ଧୁ ଖୁବ୍ ଦୁଃଖ ପ୍ରକାଶ କରିଛନ୍ତି । ସେ ନିଜେ ବୁଝି ପାରିଥିଲେ ଯେ ଦେଶର ଉନ୍ନତି କରିବାକୁ ହେଲେ ସହର, ପ୍ରାନ୍ତର, ଗ୍ରାମ, ଗୁହା, ପଡ଼ା, ପାଟଣା, ପୁରପଲ୍ଲୀ ସମସ୍ତ ଜନପଦର ଉନ୍ନତି କରିବାକୁ ହେବ । କାରଣ ଭାରତର ସଭ୍ୟତା ହେଉଛି ପୁରପଲ୍ଲୀ ଅଞ୍ଚଳ ସଭ୍ୟତା । ପଲ୍ଲୀ ଅଞ୍ଚଳର,

ପଲ୍ଲୀବାସୀଙ୍କର ଉନ୍ନତି କରି ନ ପାରିଲେ ଜାତୀୟତା ରକ୍ଷା କରିବା ଅସମ୍ଭବ ହୋଇ ପଡ଼ିବ । ଏଣୁ ପଞ୍ଚାୟତ ମାଧ୍ୟମରେ ପଲ୍ଲୀ ଜୀବନର ଉନ୍ନତି ଚାହିଁଥିଲେ ।

ପଲ୍ଲୀ ଅଞ୍ଚଳର ଅଧିବାସୀମାନେ ମାମଲାରେ ବୁଦ୍ଧି ଖେଳାଇବା ଉଚିତ ନୁହେଁ । ଦେଶୀ ଲୁଗା ପିନ୍ଧନ୍ତୁ । ଗ୍ରାମରେ ପଞ୍ଚାୟତ ଗଠନ କରି ସମସ୍ତେ ତାଙ୍କୁ ସମ୍ମାନ କର ଏବଂ ସେମାନଙ୍କ କଥାକୁ ମାନି ଚଲ । ଏହି ଉପଦେଶଗୁଡ଼ିକ ଗୋପବନ୍ଧୁ ପଲ୍ଲୀ ଅଧିବାସୀମାନଙ୍କୁ ଦେଇଥିଲେ ।

## ଜାଗ୍ରତ ଜୀବନର ଚେତନା

ଗୋପବନ୍ଧୁ ସତ୍ୟ, ନ୍ୟାୟ ଓ ଶାନ୍ତିର ଉପାସକ ଥିଲେ । ଗୋଟିଏ ପକ୍ଷରେ ବନ୍ୟା, ଦୁର୍ଭିକ୍ଷ, ମଡ଼କ ଓ ଦୁର୍ବିପାକରେ ପୀଡ଼ିତ ହୋଇଥିବା ଲୋକଙ୍କର ସେବା କରି; ଅନ୍ୟ ପକ୍ଷରେ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ବିଜୟ ନିମନ୍ତେ ନିଜର ସ୍ୱାର୍ଥକୁ ବଳି ଦେଇଥିଲେ । ଉତ୍କଳବାସୀଙ୍କୁ କର୍ମବୀର, ଧର୍ମବୀର, ନ୍ୟାୟବୀର ଓ ତ୍ୟାଗବୀର ହେବା ପାଇଁ ସେ ଉପଦେଶ ଦେଇଛନ୍ତି ।

ଦୀର୍ଘ ଦୁଇ ବର୍ଷର ବନ୍ଦୀ ଜୀବନ ଶେଷ ହେଲା । ୧୯୨୪ ମସିହା ଜୁନ ମାସରେ ଗୋପବନ୍ଧୁ କଟକର ରାଜନୈତିକ ସମ୍ମିଳନୀରେ ଯୋଗ ଦେଇଥିଲେ । ସଭାପତି ବୈଜ୍ଞାନିକ ପ୍ରଫୁଲ୍ଲଚନ୍ଦ୍ର ରାୟ ତାଙ୍କୁ ଉତ୍କଳମଣି ସମ୍ବୋଧନ କରି ସଭାମଣ୍ଡପକୁ ସ୍ୱାଗତ କରିଥିଲେ ।

ପର ଦୁଃଖ କାତର ଗୋପବନ୍ଧୁ ନିଜର ଦେହ ପ୍ରତି ନଜର ରଖୁ ନ ଥିଲେ । ଲୋକମାନଙ୍କ ସେବାକୁ ପରମ ଧର୍ମ ବୋଲି ଭାବି ନିଜକୁ ଉତ୍ସର୍ଗ କରିଥିଲେ । ୧୯୨୮ ମସିହା ଏପ୍ରିଲ ମାସରେ ଗୋପବନ୍ଧୁ ଲାହୋର ଯାତ୍ରା କଲେ । ତାଙ୍କର ଶରୀର ରୋଗରେ ଆକ୍ରାନ୍ତ ହେଲା । ସ୍ୱାସ୍ଥ୍ୟ ଭାଙ୍ଗି-ବାକୁ ଆରମ୍ଭ ହେଲା । ପରେ ପରେ ଶ୍ରମିକମାନଙ୍କ ସଭାରେ ଯୋଗ ଦେବା ପାଇଁ କଲିକତା ଗଲେ । ଗୋପବନ୍ଧୁଙ୍କ ଅତ୍ୟଧିକ ପରିଶ୍ରମ ହେତୁ ଟାଇଫଏଡ ପୁଣି ଲେଉଟିଲା । ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖ ଦିନ ଗୋପବନ୍ଧୁଙ୍କର ଅବସ୍ଥା ଅତି ଶୋଚନୀୟ ହେଲା ।

ତାରବାର୍ତ୍ତା ପାଇ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଅଧ୍ୟାପକ ରତ୍ନାକର ପତି, ଆଚାର୍ଯ୍ୟ ହରିହର ଦାସଙ୍କ ସହ ଗୋପବନ୍ଧୁଙ୍କ ଅନେକ ବନ୍ଧୁ ତାଙ୍କର ଶେଷ ଶଯ୍ୟା ନିକଟରେ ଉପସ୍ଥିତ ଥିଲେ । ତା ପରେ ପରେ ଗୋପବନ୍ଧୁ ନିଜର ଉଇଲ୍ ଡାକିଥିଲେ । ସତ୍ୟବାଦୀ ପ୍ରେସକୁ ଲୋକସେବକ ମଣ୍ଡଳକୁ ଦାନ କରିଥିଲେ । ଏହି ଉଇଲଟି ସ୍ୱାକ୍ଷର ହେଲା ।

ଉଇଲଟି ସ୍ୱାକ୍ଷର ହେବାର ମାତ୍ର ଦୁଇଘଣ୍ଟା ପରେ ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖ ରବିବାର ସନ୍ଧ୍ୟା ୭ ଘଣ୍ଟା ୨୫ ମିନିଟ୍‌ରେ ଗୋପବନ୍ଧୁ ଉତ୍କଳବାସୀଙ୍କ ପାଇଁ ନିଜ ଶଯ୍ୟା ନିକଟରେ ଥିବା ସମସ୍ତ ଲୋକଙ୍କୁ କହିଥିଲେ "କ୍ଷମା କର ଏବଂ ଭୁଲିଯାଅ ।" ଏହି କେତୋଟି ପଦ କହିବା

ପରେ ପରେ ସେ ଚିର ନିଦ୍ରାରେ ବିଶ୍ରାମ ନେଲେ । ସେତେବେଳେ ଗୋପବନ୍ଧୁଙ୍କୁ ଏକାବନ ବର୍ଷ ଚାଲୁଥିଲା ।

ଦେଶ ସେବା ପାଇଁ ଲୋକ ସେବା ପାଇଁ ନିଜକୁ ତିଳ ତିଳ କରି ଉତ୍ସର୍ଗ କରି, ନିଜ ଶରୀରକୁ ମାତୃଭୂମିର ପବିତ୍ର ମାଟିରେ ମିଶାଇ ଦେବା ପାଇଁ ସେ ଚାହିଁ ଥିଲେ । ଦେଶର ସେବା ଧର୍ମରେ ନିଜ ଜୀବନକୁ ବିତାଇ ଦେଲେ । ଗୋପବନ୍ଧୁଙ୍କ ଅନ୍ତରରୁ ସ୍ୱର ଆସିଥିଲା-

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା ପଥେ ତଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।

○